ଆମ ଗୀତ (ଦ୍ୱିତୀୟ ଭାଗ); ଲେଖକ : ଶ୍ରୀ ଶାନ୍ତନୁ କୁମାର ଦାଶ;
ପ୍ରକାଶକ : ଶ୍ରୀ ଭଗବାନ ପାଢ଼ୀ, ତାରତାରିଣୀ ପୁସ୍ତକାଳୟ, ପୁରୁଣା ବସ୍‌ଷ୍ଟାଣ୍ଡ,
ବ୍ରହ୍ମପୁର-୭୬୦୦୦୧, ଗଞ୍ଜାମ; ପ୍ରକାଶନ : ରଜ ସଂକ୍ରାନ୍ତି ଜୁନ୍ ୧୯୯୫;
ମୁଦ୍ରାକର : ଶିବରାମ ସାବତ, ମନ ମୋହନ ଟ୍ରେଡ଼ର୍ସ, ବାଲାଜୀପେଣ୍ଠ ଲେନ୍,
ବ୍ରହ୍ମପୁର-୭୬୦୦୦୨; ମୂଲ୍ୟ : ଟ. ୧୨.୦୦ (ବାର ଟଙ୍କା ମାତ୍ର)

**Aama Geeta** (*Part-II*); *By* : **Sri Santanu kumar Das;**
*Published by* : **Sri Bhagaban Padhy, Taratarini Pustakalaya,**
Old Bus-stand, Berhampur-760001, (Ganjam); *First Edition* :
**Raja Sankranti, June 1995;** *Printed by* : **Sibaram Sabat,**
**Man Mohan Traders,** Balajipentho Lane, Berhampur-760002;
**Price Rs. 12.00** (Twelve Rupees Only.)

# ମୋ କଲମରୁ......

ଆଦରର କୁନି ଭାଇ ଭଉଣୀମାନେ ! ତୁମମାନଙ୍କର ସରଳ ନିଷ୍ପାପ ହୃଦୟର ଆକର୍ଷଣ ଓ ସଂପ୍ରତି କଳୁଷିତ ସାମାଜିକ ପରିବେଶ ମଧ୍ୟରେ ମୋର ସଙ୍କୀର୍ଣ୍ଣ ମାନସଧାରା ଯେଉଁ ସୁଖ ସମୃଦ୍ଧିର ସୁନା ସଂସାରଟି ଚାହେଁ, ତା'ର ଭବିଷ୍ୟତ ତୁମେମାନେ । ଏଣୁ ମୋର ଏ ଶ୍ରମ ସାଧନା ତୁମର ହାତରେ ଦେବାପାଇଁ ଚାହିଁଲି । ତୁମମାନଙ୍କ କୁନି କୁନି ଓଷ୍ଠରେ ହସ ଭରିଦେବା ସଙ୍ଗେ ସଙ୍ଗେ ଜୀବନ କ୍ଷେତ୍ରରେ ଯଦି ଏହା ଉପଯୋଗୀ ହୋଇପାରିବ ମୁଁ ନିଜକୁ ଧନ୍ୟ ମନେ କରିବି ।

ସର୍ବୋପରି ମୋର ସହକର୍ମୀ ମାନଙ୍କ ପ୍ରେରଣା ଓ ଉତ୍ସାହ, ସୁଶ୍ରୀ ସଙ୍ଗୀତା କୁମାରୀ ପଟ୍ଟନାୟକଙ୍କ ଅକୁଣ୍ଠିତ ଶ୍ରମ ସାଧନା ଏବଂ ସହୃଦୟ ପ୍ରକାଶକ ଶ୍ରୀଯୁକ୍ତ ଭଗବାନ ପାତ୍ରୀଙ୍କ ସହଯୋଗ ପାଇଁ ମୁଁ ଚିର କୃତଜ୍ଞ ।

॥ ଇତି ॥

**ଶାନ୍ତନୁ**

● **"ଜୀବନର ପ୍ରତିଟି କ୍ଷେତ୍ରରେ ସତ୍ୟ ହିଁ ନିତ୍ୟ ସୁଖ"**

ପାଠକମାନଙ୍କ ମତାମତ ଅପେକ୍ଷାରେ

# ଆମ ଗୀତ

( ଦ୍ୱିତୀୟ ଭାଗ )

ଲେଖକ

ଶ୍ରୀ ଶାନ୍ତନୁ କୁମାର ଦାଶ




ତାରତାରିଣୀ ପୁସ୍ତକାଳୟ
ବାରକ୍‌ସ, ବ୍ରହ୍ମପୁର-୧

ଆମ ଗୀତ (ଦ୍ୱିତୀୟ ଭାଗ); ଲେଖକ : ଶ୍ରୀ ଶାନ୍ତନୁ କୁମାର ଦାଶ;
ପ୍ରକାଶକ : ଶ୍ରୀ ଭଗବାନ ପାଢ଼ୀ, ତାରତାରିଣୀ ପୁସ୍ତକାଳୟ, ପୁରୁଣା ବସଷ୍ଟାଣ୍ଡ,
ବ୍ରହ୍ମପୁର-୭୬୦୦୦୧, ଗଞ୍ଜାମ; ପ୍ରକାଶନ : ରଜ ସଂକ୍ରାନ୍ତି ଜୁନ୍ ୧୯୯୫;
ମୁଦ୍ରାକର : ଶିବରାମ ସାବତ, ମନ ମୋହନ ଟ୍ରେଡ଼ର୍ସ, ବାଲାଜୀପେଣ୍ଠ ଲେନ୍,
ବ୍ରହ୍ମପୁର-୭୬୦୦୦୨; ମୂଲ୍ୟ : ଟ. ୧୨.୦୦ (ବାର ଟଙ୍କା ମାତ୍ର)

**Aama Geeta** (*Part-II*); *By* : **Sri Santanu kumar Das;**
*Published by* : **Sri Bhagaban Padhy, Taratarini Pustakalaya,**
Old Bus-stand, Berhampur-760001, (Ganjam); *First Edition* :
**Raja Sankranti, June 1995;** *Printed by* : **Sibaram Sabat,**
**Man Mohan Traders,** Balajipentho Lane, Berhampur-760002;
**Price Rs. 12.00** (Twelve Rupees Only.)

# ମୋ କଲମରୁ......

ଆଦରର କୁନି ଭାଇ ଭଉଣୀମାନେ ! ତୁମମାନଙ୍କର ସରଳ ନିଷ୍ପାପ ହୃଦୟର ଆକର୍ଷଣ ଓ ସଂପ୍ରତି କଳୁଷିତ ସାମାଜିକ ପରିବେଶ ମଧ୍ୟରେ ମୋର ସଙ୍କୀର୍ଣ୍ଣ ମାନସଧାରା ଯେଉଁ ସୁଖ ସମୃଦ୍ଧିର ସୁନା ସଂସାରଟି ଖୋଜେ, ତା'ର ଭବିଷ୍ୟତ ତୁମେମାନେ । ଏଣୁ ମୋର ଏ ଶ୍ରମ ସାଧନା ତୁମରି ହାତରେ ଦେବାପାଇଁ ଚାହିଁଲି । ତୁମମାନଙ୍କ କୁନି କୁନି ଓଷ୍ଠରେ ହସ ଭରିଦେବା ସଙ୍ଗେ ସଙ୍ଗେ ଜୀବନ କ୍ଷେତ୍ରରେ ଯଦି ଏହା ଉପଯୋଗୀ ହୋଇପାରିବ ମୁଁ ନିଜକୁ ଧନ୍ୟ ମନେ କରିବି ।

ସର୍ବୋପରି ମୋର ସହକର୍ମୀ ମାନଙ୍କ ପ୍ରେରଣା ଓ ଉତ୍ସାହ, ସୁଶ୍ରୀ ସଙ୍ଗୀତା କୁମାରୀ ପଟ୍ଟନାୟକଙ୍କ ଅକୁଣ୍ଠିତ ଶ୍ରମ ସାଧନା ଏବଂ ସହୃଦୟ ପ୍ରକାଶକ ଶ୍ରୀଯୁକ୍ତ ଭଗବାନ ପାତ୍ରୀଙ୍କ ସହଯୋଗ ପାଇଁ ମୁଁ ଚିର କୃତଜ୍ଞ ।

॥ ଇତି ॥

**ଶାନ୍ତନୁ**

● **"ଜୀବନର ପ୍ରତିଟି କ୍ଷେତ୍ରରେ ସତ୍ୟ ହିଁ ନିତ୍ୟ ସୁଖ"**

ପାଠକମାନଙ୍କ ମତାମତ ଅପେକ୍ଷାରେ





| | | |
|---|---|---|
| ୧. | ବିଦ୍ୟା ପ୍ରଦାୟିନୀ (ବନ୍ଦନା) | ୧ |
| ୨. | ଆହେ ଗୁରୁଦେବ (ବନ୍ଦନା) | ୧ |
| ୩. | ମା ସରସ୍ୱତୀ . (ବନ୍ଦନା) | ୨ |
| ୪. | ଆମ ଏ ଦେଶ ଭାରତ | ୩ |
| ୫. | ଏଇ ମାଟି ମାଆ ମୋର | ୪ |
| ୬. | ନଈ ବଢ଼ିରେ ମରୁଡ଼ିବେଳେ | ୫ |
| ୭. | ବିଶ୍ୱ ଜନନୀ | ୬ |
| ୮. | ଆଜିର ଏଇ ନବବର୍ଷରେ | ୬ |
| ୯. | ତ୍ୟାଗମୟୀ ଜନନୀ | ୭ |
| ୧୦. | ଆମେ ସବୁ ଟିକିଫୁଲ | ୮ |
| ୧୧. | ପ୍ରାଣେ ପ୍ରାଣେ ନୂତନର | ୯ |
| ୧୨. | ବିଶ୍ୱ ବିଜୟୀ | ୧୦ |
| ୧୩. | ରବି ଉକ୍ତିରେ | ୧୧ |
| ୧୪. | ଆହେ ଜବାହାର | ୧୪ |
| ୧୫ | ସବୁ ଧର୍ମର ସବୁ କର୍ମର | ୧୫ |
| ୧୬. | ସଂପ୍ରଦାୟର ଧର୍ମଦାଣ୍ଡରେ | ୧୬ |
| ୧୭. | ହିମଗିରି ଯାହାର | ୧୭ |
| ୧୮. | ଭୂରିଆଡ଼େ ଆଜି | ୧୮ |
| ୧୯. | ଆମେ ଜାଣିଛୁରେ ଆଜି | ୧୯ |
| ୨୦. | ଆମଙ୍କର ପାଶେ ଯାହା ଦିଗନ୍ତ | ୨୦ |
| ୨୧. | କହଇ ଆଜି | ୨୧ |
| ୨୨ | ଶିର ଯୌବନା ଭୂପୃଷ୍ଠ କାନନ | ୨୧ |
| ୨୩. | ଏ ଦେଶ ଭାରତ | ୨୩ |
| ୨୪. | ହିମଗିରିଶିରେ ମୁକୁଟ ଯାହାର | ୨୪ |
| ୨୫. | ଶ୍ରୀ ପଞ୍ଚମୀ | ୨୬ |

୨୬. କର୍ମ ହିଁ ଏକା ସାର ୨୭

୨୭. ମଣିଷ ଆମେ ଏ ଧରାପରେ ୨୮

୨୮. ସବୁଙ୍କ ପିତା ଈଶ୍ୱର ୩୦

ଗାନ୍ଧି ଓ ଗୋମାତା ୩୧

୨୯. ଅସ୍ତାଚଳ ରବି ବୁଡ଼ୁଛି ୩୩

୩୦. ବିଶ୍ୱ ମାତୃଭୂମି ୩୭

୩୧. ସେହି ତ ଆମ ଘର ୩୮

୩୨. ନଦୀନାଳ ହେଲ ଧରାକୁ ୩୯

୩୩. ବରଷା ହେଲେ ୪୧

୩୪. କହେ ସୁଭାଷ ୪୨

୩୫. ବାର ମାସେ ତେର ୪୩

୩୬. ଏକ ସୂତ୍ରେ ବାନ୍ଧିବାକୁ ୪୫

୩୭. ଏ ଦେଶ ଆମରି ଜନ୍ମଭୂମି ୪୭

୩୮. ଗାଁଟି ମୋର ୪୮

୩୯. କିଏ ଅଛି ହେ ମନ୍ଦରେ ୫୦

୪୦. ସବୁ ଧରମର ସାର ୫୧

୪୧. ମୂର୍ତ୍ତି ମୁଁ ନାଃସ୍ୱୀକାର ୫୨

୪୨. ବିଶ୍ୱ ସର୍ବେ ହେବ ନବାନ୍ନ ୫୩

୪୩. ସ୍ୱଦେଶୀ ଜାତି ୫୪

୪୪. ଶୁଣ ହେ ଦେଶ ଶିଶୁ ସକଳ ୫୫




# ଶ୍ରୀ ଗୁରୁ ପଞ୍ଚକମ

ଓଁ ଅଖଣ୍ଡ, ମଣ୍ଡଳା କାରଂ ବ୍ୟାପ୍ତ ଯେନ ଚରାଚରଂ
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।।
ଅଜ୍ଞାନ ତମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା
ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।।
ଧ୍ୟାନ ମୂଳଂ ଗୁରୋର୍ମୂର୍ତ୍ତି ପୂଜାମୂଳଂ ଗୁରୋର୍ପଦଂ
ମନ୍ତ୍ର ମୂଳଂ ଗୁରୋର୍ବାକ୍ୟଂ ମୋକ୍ଷମୂଳଂ ଗୁରୁକୃପା ।।
ଚୈତନ୍ୟଂ ଶାଶ୍ୱତଂ ଶାନ୍ତଂ ସଚ୍ଚିଦାନନ୍ଦ କନ୍ଦାୟୁ
ଆତ୍ମଜ୍ଞାନ ପ୍ରଦାନେନ ତସ୍ମୈ ଶ୍ରୀ ଗୁରବେ ନମଃ ।।
ଗୁରୁଃ ପିତା ଗୁରୁର୍ମାତା ଗୁରୁର୍ଦେବୋ ନ ସଂଶୟଃ
କର୍ମଣା ମନସାବାଚ୍ଚ ତସ୍ମାତ୍ ସର୍ବୈ ପ୍ରସେବ୍ୟତେ ।।
ମନ୍ନାଥଃ ଶ୍ରୀ ଜଗନ୍ନାଥ ମଦ୍‌ଗୁରୁ ଶ୍ରୀ ଜଗତ୍‌ଗୁରୁଃ
ମମାତ୍ମା ସର୍ବଭୂତାତ୍ମା ତସ୍ମୈ ଶ୍ରୀ ଗୁରବେ ନମଃ ।।

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମଦେବ ଦେବ ।।

—o—

ଗୀତ— ୧

ବିଦ୍ୟା ପ୍ରଦାୟିନୀ

ହେ ବୀଣା ବାଦନୀ

ଜ୍ଞାନ ପ୍ରଦାୟିନୀ......ମା......

କମଳ ଲୋଚନୀ......ମା......

ମା... ... ... ହେ ମା ... ...

ଶୁଣ ମୋର ଏ ପ୍ରାର୍ଥନା

ସୁରାସୁର ବନ୍ଦନୀ ବୈକୁଣ୍ଠ ବାସିନୀ

ତୋ କରୁଣା ବଳୁ ଫୁଟୁ ମୋର ବାଣୀ

କିଛି ତ ମାଗୁନି ମା......

ମା... .. ହେ ମା... ...

ଲଳିତ କଳାମୟୀ

ଜ୍ଞାନ ବିଜ୍ଞାମୟୀ

କରୁ ମା ତପସା ତୋ'ର ଦୟା ନେଇ

ଏତିକି କରୁଣା କର ମା

ଶୁଣ ଏ ଦୀନ ପ୍ରାର୍ଥନା

ମା .. ......ହେ ମା...

ହେ ମା.........

ଗୀତ— ୨

ଆହେ ଗୁରୁଦେବ ଶୁଣ ମୋ ପ୍ରଣାମ

ବିଦ୍ୟା ବୁଦ୍ଧି ବଢୁ ମୋର

ତୁମେ ଅଟ ବ୍ରହ୍ମା ତୁମେ କୃପାସିନ୍ଧୁ

ତୁମେ ଯେ ଅଟ ଶଙ୍କର ॥

ଢ଼ାଳି ଦିଅ ପ୍ରଭୁ ଆଲୋକର ଧାର
କାଟି ଅଜ୍ଞାନ ମୋହର
ଜ୍ଞାନର ପ୍ରଦୀପ ଜଳି ଉଠୁ ହୃଦେ
ତୁଟି ଯାଉ ଅହଂକାର ॥
ତୁମର କୃପାରେ ହେଉଛି ନିର୍ମାଣ
ଦେଶ, ଜାତି, ଭବିଷ୍ୟତ
ତୁମର କରମ ତୁମରି ଧରମ
ଦେଶ ପ୍ରାଣେ ନିବେଦିତ ।
ସମର୍ପିତ ପ୍ରାଣ ତୁମର ଚରଣ
ପୂଜନ୍ତି ଜଗତ ଜନ
ଆମ୍ଭେ ତ ଅଜ୍ଞାନ କିଛି ଜାଣି ନାହୁଁ
ସହଜେ ଚଞ୍ଚଳ ମନ ।
ତୁମ ପାଦ ତଳେ କୋଟି ନମସ୍କାର
ତୁମେ ଚିର ବନ୍ଦନୀୟ
ତୁମର ପ୍ରେରଣା ତୁମରି ଦର୍ଶନ
ହେଉ ଏ ଜୀବନ ପାଥେୟ ॥

ଗୀତ— ୩
ମା ସରସ୍ୱତୀ ବିଦ୍ୟା ପ୍ରଦାୟିନୀ
ଜ୍ଞାନ ପ୍ରଦାୟିନୀ ମା...
ଦିଅ ମା ସ୍ମୃତି ଦିଅ ମା ଶକ୍ତି
ଜ୍ଞାନ ଗୁଣ ଦିଅ ମା
ବୀଣା ବାଦିନୀ ହଂସ ବାହିନୀ
ପୁସ୍ତକ ଧାରିଣୀ ମା

ବଜାଅ ବୀଣା କଇନା ମନା
କଣ୍ଠେ ବସ ମୋର ମା...
ଶୁକ୍ଳ ବସ୍ତ୍ରାବୃତା ପଦ ମନ୍ତ୍ରେ ବତା
ବ୍ରହ୍ମ ସନାତନୀ ଭୃନ୍ଦ ବେଦରତା
ଧନ୍ୟ ପ୍ରାଣ ହେଉ ମା...
ତୋ'ର ପାଦେ ମୋର ଏତିକ ଭକତ
ମାନସ କୁସୁମ ଦେଇ କରେ ଭକ୍ତି
ବଜାଅ ତୋ ବୀଣା ମା...



ଗୀତ—୪
ଆମ ଏ ଦେଶ ଭାରତ
ମହାନ ତା'ର ଅତୀତ
ତା ପାଣି ପବନେ ଗଢ଼ା ଏ ଶରୀର
ଚଙ୍ଗା ତା ସବଜ ଧାତ ।
ବେଦର ମହତ ଘେନ
ବିଶ୍ୱରେ ହସୁଛି ରାଣୀ
ଆମେ ରେ ଦାୟାଦ ତାହାର ସମ୍ପଦ
କର୍ମ ଭୂମି ଏ ଆମର
ଆମେ ସୁତା ସୁଜ ହୀନ
ନ ଜାଣୁ ତା ସନମାନ
ଧର୍ମ ସନାତନ କର୍ମ ତା ମହାନ
ଚିର ପୂଜ୍ୟା ଜଗତର
ସଂସ୍କୃତି ଅତି ମହାନ
ଜଗନ୍ନାଥ ସେ ମହାନ
ସାମ୍ୟ ଭାବଧାରା ଶାନ୍ତି ପ୍ରତିଷ୍ଠା
ବିଶ୍ୱ ପ୍ରାଣେ ପ୍ରାଣେ ଧାରା



ଗୀତ – ୫

ଏଇ ମାଟି ମାଆ ମୋର
ଅଟେ ସରଗ ସୁନ୍ଦର
ତାର ଅନ୍ନ ଜଳେ ଗଢ଼ା ମୋର ଏ ଶରୀର ॥
ତା'ର ମାଟି ଧୂଳି ହେଲେ ଅଙ୍ଗେ ବୋଳି
କଟିଯିବ ଦୁଃଖ ସୁଖ ହସିବ ସଂସାର ॥
ଏ ମାଟିର ପାଇଁ ନାଉରିଆ ପିଲା
ହସି ହସି ଧୂଳି ଖେଳୁ ପ୍ରାଣବଳୀ ଦେଲା
ନାଉରିଆ ପିଲା ପରି ମୁଁ ହେବ
ତା ଚରଣେ ପୂଜା ଫୁଲ ସଦା ଢ଼ାଳୁଥିବ
କରି ତା'ର ପୂଜା ଟେକିବ ତା ଧ୍ୱଜା
ଏ ଜୀବନ ଧନ୍ୟ ହେବ ସେବାରେ ତାହାର ॥
ସୁଜଳା ସୁଫଳା ଅଟେ ସେ ଶ୍ୟାମଳୀ
କେତେ ଦୁଃଖେ ରଖିଛି ମୋ ଜୀବନକୁ ତୋଳି
ବିଦେଶୀ ଶାସନ କଲା ହୀନମାନ
ଗୋରା ବେପାରୀ ଏ ଆସି କଲେ ପରାଧୀନ
କଲେ ଆନ୍ଦୋଳନ ବୀର ମହାଜନ
ତୋ ଅଧରେ ହସ ଦେଲେ ଦିଶିଲା ସୁନ୍ଦର ॥
ସିଏ ଦଶଭୂଜା ସିଏ ମା ଗିରିଜା
ଏ ଜୀବନ ଯାଉ ମୋର କରି ତା'ର ପୂଜା
ଆସିଛି ତା କୋଳୁ ଯିବ ତା କୋଳ
ନିଜ ସ୍ୱାର୍ଥ ପାଇଁ କିଆଁ ଦେବ ମନୋବଳ
ଦେଇ ପ୍ରାଣ ଶ୍ୱାସ ରଖିବ ତା ଯଶ
ଚିର ସୁଖ ଦେଇ ମତେ ବସାଇ କୋଳର ॥



ଗୀତ—୭

ନଈ ବଢ଼ିରେ ମରୁଡ଼ି ବେଳେ
ଯେ ଥିଲେ ଦୁଃଖୀ ଦାସ
ଆଖିର ଲୁହେ ଦରଦ ନେଇ
ଯେ ଦେଉଥିଲେ ହସ...୨
ସିଏତ ଆମ ଉତ୍କଳମଣି ଜଗତ ଜନ ବନ୍ଧୁ
ସବୁର ପଥେ ଢ଼ାଳି ଜୀବନ ହୋଇଲେ ଆମବନ୍ଧୁ
ଦେଥିଲେ ଜୀବନେ ଆଶ...
ବକୁଳ ବନ ଗଛର ତଳେ
ଜ୍ଞାନ ପ୍ରଦୀପ ଜାଳି
ଅନ୍ତଃ ତମସା ବିନାଶିବାରେ
ଜୀବନ ଦେଲେ ଢାଳି ୨
ସାକ୍ଷୀ ଗୋପାଳ ସମାଜ କୁଳ
ଖୋଜୁଛି ଅଜି ଖାଲି
ଭେଜୁନି ମନ ସ୍ୱାର୍ଥ ପଥରୁ ସ୍ମୃତି ପୂଜୁଛି ଖାଲି
ଧ୍ୱବଲେ ଲାଗଇ ହସ...୨
କେତେ ସେ ହୀନ ତା ଜାତି ଧ୍ୱଇ
ଆମେରେ ଓଡ଼ିଆ ଜାତି
ମହତ କଥା ମହତ ପଥେ
ଚଲୁନି ଆମର ମତି ୨
କି ହେବ ଏଇ ମାନ ସମ୍ମାନ ମିଥ୍ୟା ପୂଜାରେ ଧ୍ୱଚ
ଅଜି ତ ହେଲେ ଆସ ସଭିଏଁ ଉଚଟେ ଯିବା ପାଇଁ
ଦେଖିବା ତା ଓଠେ ହସ...
ଆମେ ଦେଖିବା

ଗୀତ – ୭

ବିଶ୍ୱ ଜନନୀ......

ଭୁବନ ମନ ମୋହିନୀ
ଶିରେ ହିମ ଗିରି ତୋର
ପଦ୍ମରେ ସିନ୍ଧୁ ସାଗର
ନିତ୍ୟ ସେବା ହେଇ ପଡେ ଅଛନ୍ତି ଜାଣି
ପବିତ୍ର ଜାହ୍ନବୀ ଧାର
ବକ୍ଷେ ସୁଧା ଧାର ଧାର
ପ୍ରାଣେ ପ୍ରାଣେ ଶାନ୍ତି ଦିଏ
ଧୌତ କର ପାଦଦ୍ୱୟର
ସୁଜଲା ସୁଫଳା ତୋ କେଦାର
ସୁଖେ ବଢାଇ ଅଛୁ ସୁତ ସୁତାଙ୍କୁ ତୋହର
ସହିବା ପଣେ ଧରଣୀ
ବିଶ୍ୱ ମାତୃ ପୂଜା ଘେନ
ହୋଇଛୁ ରାଣୀ ॥
ତୋ କୋଳରେ ମୁଁ ହିଁ ହୀନ
ମୂଢ଼ ପ୍ରାଣେ ମୁଁ ସନ୍ତାନ
ବୀର ପ୍ରସବିନୀ ଜନନୀର
ସେବା ପାଇଁ ନାହିଁ ମନ
ଏଣୁ ଏ ପ୍ରାଣ ତତେ କରେ ସମର୍ପଣ
ମମ ଭାବେ ତୋଳିନିଅ
ମୋ ଦେଶ ଜନନୀ
ଜୀବନଟେ ଧନ୍ୟ ହେବ
ସେବ ତୋ'ର କୋଟି ପ୍ରାଣୀ ॥



ଗୀତ—୮

ଆଜିର ଏଇ ନବ ଉତ୍ସବେ
ଜାଗିଛି ସକଳ ଏ ଦେଶ ପ୍ରାଣ
ଆମରେ ବୀର ଚାଚା ନେହେରୁ
ଦେଶ ଶିଶୁ ମହାଜନ ।
ନବ ଉନ୍ମାଦନା ଜାଗରଣ ନେଇ
ପ୍ରତି ପ୍ରାଣେ ଦେବୁ ଚେତନା ଜଗାଇ
ପ୍ରୀତି କୁସୁମର ଶାନ୍ତିର ମହକେ
ହସାଇବୁ ସବୁ ପ୍ରାଣ ... ...
କେତେ ଆଶା କେତେ ଭରସା ନେଇ
ନିୟମ ରଚନା ଦେଶର ପାଇଁ
ଆଜିର ଏ ଗଣତନ୍ତ୍ର ଦିବସେ
ଡାକିନେଲେ ଦେଶ ପ୍ରାଣ... ...
ନିୟମ ବିଧାନ ସମ୍ବିଧାନେ ଦେଲେ
ଜାତିଭେଦ ଭୁଲି ସର୍ବେ ମାନି ନେଲେ
ଆସ ଶିଶୁଗଣ ଜାଗିଦିଅ ମନ
ମାନିବାରେ ସେ ବିଧାନ...
ସମ୍ବିଧାନ ପଥେ ଆମେ ସବୁ ଚାଲିବା
ଦେଶ ପ୍ରୀତି ପ୍ରତି ହୃଦେ ଜଗାଇବା
ହସିବ ଭାରତ ଧରିତ୍ରୀ ମହତ.
ଧନ୍ୟ ହେବ ଦେଶ ଜନ ..



ଗୀତ—୯

ତ୍ୟାଗମୟୀ ତୁ ଜନନୀ
ଭୁବନ ମନ ମୋହିନୀ
ତୋ ତ୍ୟାଗର ନାହିଁ ସୀମା
ଜନ୍ମ ଦାତ୍ରୀ ମାତା ରମା
ସଜଳା ସୁଫଳା ସୁଶ୍ରୀ ଶୋଭା ଧରଣୀ ।।

ପବିତ୍ର ଗଙ୍ଗାର ଧାର
ତୋ ହୃଦ ଅମୃତ ଧାର
ପାପ ତାପ ବିନାଶିନୀ
ବୈକୁଣ୍ଠ ପୁର ବାସିନୀ
ବିଷ୍ଣୁ ପଦେ ବିଷ୍ଣୁ ପଦ ପୂଣ୍ୟ ଜନନୀ ।।
ପଞ୍ଚ ଆତ୍ମା ପଞ୍ଚ ପ୍ରାଣ
ସବୁତ ତୋହର ଦାନ
ତୋ ଦୟାରୁ ସିନା ମାତ
ଆମ୍ଭେ ଯେତେ ସୁତା, ସୁତ
ମମତାରେ ବାନ୍ଧିଛୁ ମା ସକଳ ପ୍ରାଣୀ
ଏ ପ୍ରାଣ ଶରୀର ତୋ'ର
ସେବା ଦାସ ଶ୍ରୀ ଛାମୁର
ନୀଳାଚଳ ପାଟରାଣୀ
ଉତ୍କଳୀ ବିଶ୍ୱମୋହିନୀ
ଅଜ୍ଞାନ ସଣେ ସୟରେ କରେ ଦସ୍ତିନୀ
ଦିଅ ପ୍ରାଣେ ମୋର ଭକ୍ତି
ଅଜସ୍ର ଅକ୍ଷୟ ଶକ୍ତି
ତୋ ସେବାରେ ବଢ଼ି ଯିବ
ଉକତର ଡ଼ାକ ତୋଳିବ
ମାତୃ ମନ୍ତ୍ରେ ବିଶ୍ୱ ପ୍ରାଣ ଆଣିବ ଟାଣି



ଗୀତ—୧୦
ଆମେ ସବୁ ଟିକି ଫୁଲ ଏଇ ଅଗଣାର
ନାନା ରଙ୍ଗେ ନାନାରୂପେ ହସୁ ଜୀବନର
ସ୍ନେହ ଆମ ପାଇଁ ଲୋଡ଼ା
ମମତାର ସ୍ନିଗ୍ଧ ଧାରା

ଆମ ପାଇଁ ଏ ଆଶିଷ ହେଉ ଦେବତାର
କେତେ ଗୁଣ କେତେ ବାସ
ଅଛି ଆମ ପାଖେ
ଢ଼ାଳିଦେବୁ ଏ ଧରାରେ
ଜନନୀ ସକାଶେ .....
ସତ୍ୟ ଶକ୍ତି ଆମ ଗର୍ବ
ନିଷ୍ପାପ ଏ ପ୍ରାଣ ସର୍ବ
ସରଳର ଛନ୍ଦେ ଛନ୍ଦେ କବଚ ଦୁର୍ବାର
ସବଳର ହସ ଧାରେ ହସାଅ ଜୀବନ
ହୃଦ ତାପ ସବୁ ଯେନ ବୁଝାଉ ତା ମନ
ନ ଢ଼ାଳି ଆମ ରେ ବିଷ
ଦେବୁ ସବୁ ନୂଆ ଆଶ
ତା କୋଳେ ସୁଖ ହସ ଦେବୁ ଜଗତର...



ଗୀତ—୧୧

ପ୍ରାଣେ ପ୍ରାଣେ ନୂତନର ଆଶା ଜାଗିବ
ଆମ ସ୍ନିଗ୍ଧ ପରଶରେ ବିଶ୍ୱ ହସିବ
ଶାନ୍ତି ମୈତ୍ରୀ ପ୍ରୀତି ଧରି
ଦେବୁ ପ୍ରାଣେ ପ୍ରାଣେ ଭରି
ଆମ ଶାନ୍ତି ବୀଣା ପ୍ରତି ପ୍ରାଣେ ଜାଗିବ ॥
ଆମ ଭ୍ରାତୃ ବନ୍ଧନରେ ଧରା ନାଚିବ
ଏକତାର ମନ୍ତ୍ର ତାନେ ସୁର ତୋଳିବ
ବେଦ ସ୍ୱର ଆମ ବାଣୀ
କର୍ମ ପଥେ ଦେବୁ ଟାଣି
ଏକ ମାତୃ କୋଳେ ସୁଖ ପଣେ ଜାଗିବ ॥

ସଉଳର ଛନ୍ଦ ତଳେ ସବୁ ନାଶିବୁ
ଦୁଃଖ ଶୋକ ରୋଗ ତାପ ମନ୍ଦ ପୋଛିବୁ
ବିଜୟ ନିଶାଣ ଧରି
ନାଶି ଦେବୁ ସ୍ୱାର୍ଥ ଅରି
ମାତୃ ମନ୍ତ୍ରେ ବିଶ୍ୱ ପ୍ରାଣ ନାଚି ଉଠିବ ।।
ଅଜ୍ଞାନର ଗତିପଥ ପୋଛିବୁ
ଜ୍ଞାନର ଆଲୋକ ଶିଖା ଉର୍ଦ୍ଧ୍ୱେ ଟେକିବୁ
ଭୋଗ ସୁଖ ନାଶ କରି
ଶାନ୍ତ ଶୁଦ୍ଧ ପ୍ରାଣ ଧରି
ଶାଶ୍ୱତର ସୁଖ ନେଇ ଜନ ହସିବ ।।



ଗୀତ — ୧୨

ବିଶ୍ୱ ବିଜୟୀ ହେ ବିବେକ ଭାଇ
ଆସ ଆଜି ତୁମେ ମାଆର ପାଇଁ
ମାତୃଭୂମି ଢାଳୁଛି ଆଜି ଲୁହ
ମନରେ ତା ଆଜି ଅନେକ କୋହ
ତା ମାନ-ସମ୍ମାନ ରଖିବା ପାଇଁ
ଆସ ଆଜି ତୁମେ ବିବେକ ଭାଇ ।।
ଜ୍ଞାନ ବିବେକର ନାହିଁ ବିଚାର
ବେଦ ପୁରାଣ ତ ହେଲା ଅସାର
ସ୍ୱାର୍ଥ ପାଇଁ ଆଜି ଖାଲି ଲଢ଼େଇ
ଆସ ଆଜି ତୁମେ ବିବେକ ଭାଇ ।।
ଦେଶ ମାଟିରେ ନାହିଁ କା ଭାବ
ନିଜ ସ୍ୱାର୍ଥ ପାଇଁ ସଭିଙ୍କ ଗର୍ବ

ଧର୍ମ କର୍ମ ସବୁ ଦେଲେ ବୁଡେଇ
ଆସ ଆଜି ତୁମେ ବିବେକ ଭାଇ ।।

ଆମ ଅହଂକାର ସ୍ୱାର୍ଥ ଭସ୍ମରେ
ବିଶ୍ୱ ସନାତନ ସୁପ୍ତ ଅନ୍ତରେ
ଅପବାଦେ ସୁଜ୍ଞ ଦେଖାଏ ନାହିଁ
ଆସ ଆଜି ତୁମେ ବିବେକ ଭାଇ ।।

ଢ଼ାଳି ଦିଅ ତୁମ ଆଶିଷ ବାରି
ଜାଗ ଦେଶ ପ୍ରୀତି ହୃଦେ ସବୁରି
ଭାତୃ ପ୍ରେମେ ବିଶ୍ୱ ଉଠୁ ଜଗାଇ
ହସିବ ଭାରତ ବିଶ୍ୱର ରାଣୀ
ଶାନ୍ତି, ମୈତ୍ରୀ, ପ୍ରୀତି, କରୁଣା ଘେନି
ନାଚିବା ସଭିଏଁ ତା ସୁଖ ପାଇଁ
ଆସ ଆଜି ତୁମେ ବିବେକ ଭାଇ ।।



ଗୀତ—୧୩

ରବି ଉଇଁଛିରେ ଆଜି ଉଇଁଛି
ଜାତି ନିଶାଣର ବାର୍ତ୍ତା ବହୁଛି
କି ଶୁଭରେ ସତେ ପାହୁଛି ରଜନୀ
କେତେ ନୂଆ ଆଶା ଆନନ୍ଦ ଆଣି
ଏକତାର ରାହା ଖୋଲୁଛି
ଜାତି ନିଶାଣର ବାର୍ତ୍ତା ବହୁଛି ।।

ସ୍ୱାଧୀନ ଦିବସ ଅଗଷ୍ଟ ପନ୍ଦର
ଜାଗିଛିରେ ଅଜି ପୁର ଓ ସହର
ପୁଲକିତ ମନ ହୋଇଛି
ଜାତି ନିଶାଣରେ ବାର୍ତ୍ତା ବହୁଛି ।।

ଏଇ ଦିନ ପାଇଁ କେତେ ସୁର ବୀର
ପ୍ରାଣବଳୀ ଦେଇ ହୋଇଲେ ଅମର
ଇତିହାସ ଆଜି କହୁଛି
ଜାତି ନିଶାଣର ବାର୍ତ୍ତା ବହୁଛି ।।
ଆସ ମୋର ଭାଇ ଭଉଣୀ ନିକର
ଛାଡ଼ି ଭେଦ ଭାବ ଜାତି ଓ ଧର୍ମର
ମାତୃଭୂମି ଆଜି ଡ଼ାକୁଛି
ଜାତି ନିଶାଣର ବାର୍ତ୍ତା ବହୁଛି ।।
ଆମର ସେନେହ ଆମ ପରଶରେ
ସ୍ନେହ ପ୍ରେମ ଜାଗି ଉଠୁ ସବୁ ପ୍ରାଣେ
ଆଜି ଏ ବାରତା ଦେଉଛି
ଜାତି ନିଶାଣର ବାର୍ତ୍ତା ବହୁଛି ।।



ଗୀତ—୧୪

ଆହେ ଜବାହାର
ପଣ୍ଡିତ ନେହେରୁ
ଭାରତ ମାତାର ସୁଯୋଗ୍ୟ କୁମର
ଆଜି ଜନ୍ମ ଦିନେ ଏ ଶୁଭ ଲଗନେ
ଘେନ ଆମ ଏଇ ଶିଶୁ ନମସ୍କାର ।
ତୁମର ସ୍ମୃତିର
ପ୍ରଦୀପକୁ ଜାଳି
ବିନମ୍ର ଭକ୍ତିରେ
ଦେଉଛୁ ଅଞ୍ଜଳି
ଅମରୁ ଧାମରୁ ଆସ ଅବତରି
ଘେନ ଏ ଭକ୍ତି କୁସୁମ ଆମର ।

ବାପୁଜୀ ଆଲୋକେ
ଆଲୋକିତ ପ୍ରାଣ
ଜାଗି ଜଗାଇଲ
ସବୁ ଦେଶ ପ୍ରାଣ
ଏ ଦେଶ ପରାଣେ ହେଲ ହେ ଅମର ।।



ଗୀତ—୧୫

ସବୁ ଧର୍ମର ସବୁ କର୍ମର
ଗୋଟିଏ ମୂଳ କଥା
ସତ୍ୟ ବଚନ ଅଟେ ଜୀବନ
ଗୀତାର ମର୍ମ କଥା ।।
ଆସିଲେ ଆସୁ ଝଡ଼ ବିପଦ
ନଇଁବା ନାହିଁ ମଥା
ସତକୁ କହ ସୁଖରେ ଥିବା
କଷ୍ଟ ପଛକେ ମଥା ।।
ସତ୍ୟକୁ ନେଇ ଗାନ୍ଧିଜୀ ବୁଢ଼ା
ଜଗତେ ହେଲେ ସାର
ସତ୍ୟ ପଥରେ ଧର୍ମଟି ସିନା
ଜଗତେ ପୂଜେ ନର ।।
ସ୍ୱାର୍ଥର ପଥେ ଅସତ୍ୟ ମତେ
ବିବେକ ଗଲା ବୁଡ଼ି ।।
ଆଜି ଏ ଧରା ହୀନ ଶୃଙ୍ଖଳେ
ଧର୍ମ ତ ଗଲେ ବୁଡ଼ି ।।
ସତ୍ୟ ପଥରେ ଧର୍ମ ମତରେ
ଆଜି ତ ହେଲେ ଆସ
ଶାନ୍ତି ପ୍ରୀତିରେ ମୈତ୍ରୀ ବନ୍ଧରେ
ଓଠରେ ଧରୁ ହସ ।।



ଗୀତ—୧୭

ସଂପ୍ରଦାୟର ଧର୍ମ ଦାଣ୍ଡର
ଗୋଟିଏ ମୂଳ ଲକ୍ଷ୍ୟ
ଯେଉଁ ପଥରେ ଚଳଲେ ଚଳ
ଈଶ୍ୱର ଏକା ମୂଖ୍ୟ ।।
ଯିଶୁ ମହମ୍ମଦ ଗୁରୁ ନାନକ
ଚୈତନ୍ୟ, କବୀର, ସ୍ୱାମୀ ବିବେକ
ଦେଲେ ତ ବିଶ୍ୱ ମନ୍ତ୍ର
ଭ୍ରାତୃ ପ୍ରୀତିର ମୈତ୍ରୀ ବନ୍ଧିରେ
ଅହିଂସା ମୂଳ ମନ୍ତ୍ର
ରାମ ରହିମର ଲକ୍ଷ୍ୟ ।।
ଧରମ ସିନା ଧାରଣ ପାଇଁ
ଭେଦଭାବ କିଛି ନାହିଁ
ଆମେରେ ବାଣ୍ଟି ଲଭୁ କଷଣ
ଆମର ସୁଖ ପାଇଁ
ଆସ ହେ ସବୁ ଭାଇ ଭଉଣୀ
ଚାଲିବା ଏକ ପାଦେ
କର୍ମ ଭୂମିରେ ପୂଜିବା ପିତା
ନମିବା ମାତାର ପାଦେ
ସେ ଏକା ଧର୍ମ ର ଲକ୍ଷ୍ୟ ।।



ଗୀତ—୧୭

ହିମଗିରି ଯାର ମୁକୁଟ ସମ୍ଭାର
ସାଗର ଯା ସଦା ଧୁଅଇ ପୟର
ମୋ ଜନମ ଭୂଇଁ, ତା'ର ପୁଏ ମୁହିଁ
ସେହି ତ ଭାରତବର୍ଷ...।।

ତା ମାନ ମହତ ମୋ ଜୀବନ ବ୍ରତ
ତା ଧର୍ମ, ତା କର୍ମ ମୋ ଜୀବନ ସତ୍ୟ
ଢ଼ାଳିଦେବି ରକ୍ତ ରଖିବି ମହତ
ଦେବି ତା'ରେ ଚିର ହସ ।।

ମାତୃ ସେବା ଯଜ୍ଞ ବେଦୀ ସଜାଡ଼ିବି
ତା' ଚରଣେ ସଦା ଫୁଲ ଢ଼ାଳୁଥିବି
ଏ ରକ୍ତ, ଏ ପ୍ରାଣ ଆହୁତିରେ ଦେଇ
ରଖିବି ତାହାର ଯଶ ।।

ବିଶ୍ୱ ଜନ ହିତେ ଯା ସ୍ତୁତେ ଚିନ୍ତନ୍ତି
ଅହିଂସା ମନ୍ତ୍ରରେ ଶାନ୍ତି ପରଶନ୍ତି
ସିଏ ମୋ ଜନନୀ, ସିଏ ମା ଭବାନୀ

କୋଟିଏ ପ୍ରାଣରେ ଗୋଟିଏ ଭାବନା
ଶତ ନଦ ନଦୀ କୋଟିଏ ଝରଣା
ଭେଦ ଭାବ ନାହିଁ
ମାତା ସେବା ପାଇଁ
କରନ୍ତି ତା ପାଦେ ଆଶ

ନିଖିଳ ଜଗତ ଏକ ପରିବାର
ବିଶ୍ୱ ଭ୍ରାତୃଭାବ ଯା ଅଧର ଧାର

ଧର୍ମ ସନାତନ କର୍ମ ତା ମହାନ
ଗଙ୍ଗା ତା ଅଧର ସ୍ପର୍ଶ
କେତେ ଜନ୍ମ କେତେ ତପ କରିଥିଲି
ଏ ଜନମେ ତୋର କୋଳେ ଜନ୍ମ ହେଲି
ଶୋଭାର ଭଣ୍ଡାର
ଉତ୍କଳ ମୋ ଘର, ଜଗନ୍ନାଥ ଯହିଁ ବାସ



ଗୀତ—୧୮

ଚଉଦିଗେ ଆଜି ହାହାକାର ଖାଲି
ଗଛଲତା ହେଲା ଶୂନ୍ୟ
ନୋହିଲା ବରଷା ବଢ଼ୁଛି ଉତ୍ତାପ
କି ହେବ ଜଗତ ପ୍ରାଣ ॥ ୧ ॥
ଆମ୍ଭେ ଭୁଲିଗଲୁ ଅତୀତ ଆମର
ଆଜି କଥା ଭାଳି ଭାଳି
ନିଜ ହିତ ପାଇଁ ତରୁ ଲତା କାଟି
ପ୍ରକୃତିକୁ ଦେଲୁ ଜାଳି ॥ ୨ ॥
ଝଡ଼ ପୋକ ପରି ମଣିଷ ଜାତିଟା
ହୁ ହୁ ଗଲା ବଢ଼ି
ସୁଖ ସୁବିଧାରେ ନାମରେ ଗଢ଼ିଲୁ
କଳ କାରଖାନା ଗାଡ଼ି ॥ ୩ ॥
ସହର ବଜାର ରାଜପଥ ପରେ
ଉନ୍ମତ୍ତ ଯାନ ବାହନ
ବଢ଼ାଇ ଦେଲା ବିଷ ହଳାହଳ
ଅଶାନ୍ତ ଆଜି ଜୀବନ ॥ ୪ ॥

ନିରମଳ ବାୟୁ ଉତ୍ତମ ପାନୀୟ
ଦୁର୍ଲଭ ଆଜି ଆମକୁ
କଳ ଧୂଆଁ ଆଉ ମଇଳା ପାଣି
ଘେରିଗଲା ଜଗତକୁ ॥ ୫ ॥
ଅମୃତ ଆଶାରେ ଦେବତା ଦାନବ
ପାଇଲେ ଯେପରି ବିଷ
ଆଜିର ମଣିଷ ବିଜ୍ଞାନରେ ମାତି
ଲୋଡ଼ି ଆଣେ ସେହି ବିଷ ॥ ୬ ॥
ଆଜି ହେଲେ ସବୁ ଜାଗି ଉଠ ଭାଇ
ବଦଳା ଏ ପରିବେଶ
ତରୁଲତା ଧରି ଏ ପୃଥିବୀ ଆମ
ଦେଖାଉ ତାହାର ହସ ॥ ୭ ॥



ଗୀତ—୧୯

ଆମେ ଜାଗିଛୁରେ ଆଜି ଜାଗିଛୁ
ମାଟି ମାଆ ପାଇଁ ଆଜି ଜାଗିଛୁ
ସେନେହ ମମତା ମନୋବଳ ନେଇ
ଭେଦଭାବ ସବୁ ଦୂରେ ଫିଙ୍ଗିଦେଇ
କଳ୍ପ ଶପଥ ଘେନିଛୁ
ଆମେ........ ... ... .

ସାଧନାର ପଥେ ଆସୁ ଯେତେ ଝଡ଼
ହଟିଯିବନି ଭାଙ୍ଗିବାରେ ସ୍ୱାର୍ଥ ଗଡ଼
ଜାଗ୍ରତ ପ୍ରହରୀ ସାଜିଛୁ
ଅନ୍ୟାୟ ଶାସନ ଜାଲ ପୋଡ଼ି ଦେବୁ
ଜାତୀୟ ଗୌରବ ଧ୍ୱଜା ଉଡ଼ାଇବୁ
ସତ୍ତିଏଁ ତ ପଣ ଘେନିଛୁ

କେତେ ଯୁବ ବୀର ପ୍ରାଣବଳୀ ଦେଇ
ଯାଉଛନ୍ତି ଏହି ମାଟି ମାଆ ପାଇଁ
ତାଙ୍କର ପଥକୁ ଘେନଛୁ
ଆମେ ... ...
ଜାତୀୟ ପତାକା ତଳେ ଠିଆ ହୋଇ
କରୁଛୁ ଶପଥ ଭଉଣୀ ଓ ଭାଇ
ଏକତାର ମନ୍ତ୍ର ଗଢ଼ୁଛୁ
ଆମର ତ୍ୟାଗରେ ପୁଲକିତ ହୋଇ
ଜାଗିବ ଭାରତ ଗୌରବ ଫେରାଇ
ମନରେ ଆଶାକୁ ବାନ୍ଧିଛୁ ॥



ଗୀତ—୨୦

ଆମ ଚାରିପାଖେ ଯାହା ଦିଶଇ
ବିଲ, ବଣ, ଘର, ପାହାଡ଼, ନଈ
ଦାଣ୍ଡ ଯେ ବାଡ଼
ପରିବେଶ ଅଟେ ଆମ ସବୁର
ଆମ ପରିବେଶ ଆମ ଜୀବନ
ହରଷ ରଖଇ ସବୁର ମନ
ଗଛ ଲଗାଅ
ଲଗି ପୋଛି ଘରେ ଶିକ୍ଷା ଦିଅ
ତରୁଲତା ଯେତେ ବଢ଼ି ଉଠିବ
ପରିବେଶ ଶୋଭା ସେତେ ବଢ଼ିବ
ସୁସ୍ଥ ରହିବା

ସୁଖରେ ଜୀବନ ବଢ଼ାଇ ଥିବା
ନାଳ ନର୍ଦ୍ଦମାକୁ ସଫା କରିବା
ମଶା ମାଛି ସବୁ ଘଉଡ଼ି ଦେବା
ନଥିବ ରୋଗ

ସୁଖରେ ଧରଣୀ କରିବା ଭୋଗ
ଅଳିଆକୁ ସବୁ ଗାତରେ ଦେବା
ମଳ ମୂତ୍ର ଯଥା ସ୍ଥାନରେ ଯିବା
ରାସ୍ତା ଘାଟକୁ

ସଫାକର ହଟାଇବା ରୋଗକୁ
ପୁଷ୍କରିଣୀ ଜଳ ଆମ ସମ୍ପଦ
ମଳ, ମୂତ୍ର, ଶୌଚ ସେଠି ବିପଦ
ଦୂଷିତ ଜଳ

ବିଷମତ ଭାଇ ସବୁରି କାଳ
କଳ କାରଖାନା ପରିବେଶରେ
ଗଛ ଲତା ଭରି ଦେବା ସେଠାରେ
ସବୁଜ କରି

ଶୁଦ୍ଧ ଜଳବାୟୁ ଦେବା ସଞ୍ଚରି
ଆସ ଭାଇ ଅଜି ଶପଥ ନେବା
ସଭିଏଁ ମିଳଣ ଗାତ ଖୋଳିବା
ଗଛ ଲଗାଇ

ସୁସ୍ଥ ପରିବେଶ ଦେବା ଫେରାଇ



ଗୀତ—୨୧

ଜହ୍ନଇ ଆଈ ପିଲାଏ ଶୁଣ
କହୁଛି ଏବେ ଜଣର ଗୁଣ
ଶାଳ ଶାଗୁଆନ ଅର୍ଜୁନ ଗଛ
ଶୁଣିଲେତ ଆଜି ଲାଗୁଛି ମିଛ
ଥିଲା ଯେ ଦିନେ ଗହନ ବନେ
ସୁଖେ ଭୋଗୁଥିଲେ ଜଗତ ପ୍ରାଣେ
କେତେ ଲତା ଗୁଳ୍ମ ଔଷଧି ତରୁ
ରକ୍ଷା କରୁଥିଲେ ରୋଗ ମୁଖରୁ
ଜାଳେଣି ଠାରୁ ଘର କରଣା
ନଥିଲାତ କେଉଁ କଥାରେ ଉଣା।
ବାପା କେକେ ବାପା ଥିଲେ ମହତ
ଗଛ ରୋପୁଥିଲେ ଖୋଳିଣ ଗାତ
ଏବେ ଜନ ସଂଖ୍ୟା ବଢିଲା ଢାଳୁ
ଆମ ସୁଖ ପାଇଁ କାଟିଲେ ସବୁ
ଆମ୍ବ, ନାରୀକେଳ, ପଣସ ଗଲା
ତୋଟା ବାଡ଼ି ଆଜି ପଡ଼ିଆ ହେଲା
ବନଚର ପ୍ରାଣୀ କ୍ଷୟ ହୋଇଲେ
ଚିଡ଼ିଆଖାନରେ ବନ୍ଦୀ ହୋଇଲେ
ମୁକ୍ତାଚାରୀ ପକ୍ଷୀ ହୋଇଲେ ଶୂନ୍ୟ
ଦେଖିବାକୁ ଆଜି ହେଲେ ସପନ
ଅସୁନ୍ଦର ଏବେ ଧରଣୀ ହେଲା
କଳ କାରଖାନା ଧୂଆଁ ଛାଡ଼ିଲା
ପଲାଶ ଫୁଲ କି ସୁବାସ ଦେବ
ପ୍ରକୃତି ବିହୀନ ଦୁଃଖ ବଢିବ ॥

ଫୁଲ ଫଳ ଖାଦ୍ୟ ଗଛ ବିଅର
ଗଛ ଥିଲେ ଧରା ଶୀତଳ ହୋଇ
କାଟିଦେବା ସବୁ ଗଛକୁ ଯେବେ
ଜଙ୍ଗଲଟି ଶୂନ୍ୟ ହୋଇବ ତେବେ
ନୋହିବ ବରଷା ନଥିବ ଜଳ
ଉଚ୍ଛନ୍ନ ହୋଇବ ଗୃଷୀର କୂଳ
ଖାଦ୍ୟ ଶସ୍ୟ ଆଉ କିଛି ନୋହିବ
ହାହାକାର ହୋଇ ଜୀବନ ଯିବ
ପରିବେଶ ତାତ ଉଠିବ ଯିଲେ
କି ହେବ ଏ ଧରା ପ୍ରାଣୀ ନଥିଲେ
ବାୟୁ ମଣ୍ଡଳତ ଦୂଷିତ ହେବ
ନାନା ରୋଗ ଭରେ ଜୀବନ ଯିବ ।।

ଆସ ମୋ ନାତି ନାତୁଣୀ ମାନେ
ଗଛ ଲଗାଇବା ହରଷ ମନେ
ସରସ ସୁନ୍ଦର ହେଉତ ଦେଶ
ହସଉଠୁ ଆମ ଏ ପରିବେଶ
ଫୁଲ ଫଳ ଧରି ଜଗତ ହସୁ
ଶୁଦ୍ଧ ଜଳବାୟୁ ସଦା ପରଶୁ ।।



ଗୀତ — ୨୨

ଚିର ଯୌବନୀ ଭୂପୃଷ୍ଠ କାନନ
ସବୁଜ ଶ୍ୟାମଳାଙ୍ଗୀ
ମାଟି ମମତାରେ ସାଜିଛି ଅଙ୍ଗ
ସବୁ ଉପମାକୁ ଲଙ୍ଘି

ଏ ବାହ୍ୟ ସୁନ୍ଦର କିଛି ନୁହେଁ ତା'ର
ହୃଦ ତା ଅତି ଉଦାର
ସ୍ନେହ ପ୍ରେମ ଭରା ମାତୃ ହୃଦ ପରି
ପ୍ରଚ୍ଛନ୍ନେ ଲକ୍ଷ୍ମୀ ଭଣ୍ଡାର
ତା ପାଇଁ ପବନ ଫୁଲ, ଫଳ, ଧନ
ଗଢ଼ାନ୍ତି ସକଳ ପ୍ରାଣ
ତା ଶ୍ୟାମଳ ଶୋଭା ଅନନ୍ତ ଅସୀମ
ସମ୍ମୋହିତ କରେ ମନ
ନୁହେଁ ସେ ବନ୍ଦନ୍ଦ ଏ ଧରା ପୃଷ୍ଠରେ
ରାଣୀ ଅଟେ ପ୍ରକୃତିର
ତା ପାଇଁ ଧରଣୀ ଧନ୍ୟ ତ ହୋଇଛି
ଲଭିଛି ମାତା ବେଶର
ତା ପାଇଁ ଲେଖକ ତା ପାଇଁ ଭାବୁକ
ବରହୀ ବଧୁର ପ୍ରାଣ
ନିଜ ନିଜ ଭାବେ ସକଳେ ତୋଷନ୍ତି
ଆକର୍ଷେ ସବୁରି ମନ
ଆଜି ତା'ର ସେହି ଗୌରବ ଗାରିମା
ଆମ୍ଭଙ୍କୁ ଘେନା ନୋହିଲା
ଛିନ୍ନ କଲୁ ତା'ର ଅଙ୍ଗ ସୌଷ୍ଠବକୁ
ଶ୍ରୀହୀନା ଆଜି ସେ ହେଲା
ଆଜିର ମଣିଷ ମଣିଷ ନୁହଁ
କ୍ଷଣିକ ସୁଖରେ ମତ୍ତ
ବଦର ଲାଳସା ପୂର୍ଣ୍ଣ କରିବାରେ
ଉଠୁଛି ହୋଇ ଉନ୍ମତ୍ତ

ଆସ ଅଜି ଭ୍ରଇ ଆମ ସୁଖ ପାଇଁ
ଆମେ ତ ଜାଗି ଉଠିବା
ଗଛକୁ ଲଗାଇ ପ୍ରକୃତ ବଞ୍ଚାଇ
ଚିର ସୁଖ ଲଭୁଥିବା ।।



ଗୀତ—୨୩

ଏ ଦେଶ ଭାରତ
ଜଗତେ ବିଖ୍ୟାତ
ବିଶ୍ୱରାଣୀ ଅଟେ ସେହି
ତା ମ ନ ମହତ, ମୋ ପ୍ରାଣ ମହତ
ଜାଗିଛୁ ତାହାର ପାଇଁ
ତା କୋଳ ସନ୍ତାନ ଆମେ ଯେତେ ସବୁ
ସଭିଏଁ ଅଟୁ ସମାନ
ଆ ... ... ଆ ... , ... ଆ ... ... ... ...
ହିନ୍ଦୁ, ଖ୍ରୀଷ୍ଟିଆନ, ଇସାଇ, ଜଇନ
ନାହିଁ କେହି ବଡ଼ ସାନ
ଆମେ ଏକା ମାଆ ସନ୍ତାନ
ଆମର ସୁଖକୁ ଆମେରେ ଆଣିବୁ
ଆମ ସୁଖ ସବୁ ତାକୁ ଅରପିବୁ
ଫୁଟାଇବୁ ହସ ତା ଅଧରେ ଆମେ
ଦେଇ ବହଲେ ବଳୀ ପ୍ରାଣ
ଆ.........ଆ.........
ସଭିଏଁ ଅଟୁ ସମାନ

ବିଶ୍ୱ ଭ୍ରାତୃଭାବ ଫେରାଇ ଆଣିବୁ
ଶାନ୍ତି ମୈତ୍ରୀ, ପ୍ରୀତି ବାଣ୍ଟି ବାଣ୍ଟି ଯିବୁ
ଅହିଂସା ମନ୍ତ୍ରର ଅମର ବାଣୀରେ
ଆ·· ····· ଆ
ଅତୀତ ଦେବୁ ଫେରାଇ
ଧନ୍ୟ ହେବ ଆମ ପାଇଁ
ବିଶ୍ୱର ଏକତା ନେଇ
ଅତୀତ ଦେବୁ ଫେରାଇ
ଆ·········ଆ ········
ଆଣିବୁ ତା ସନମାନ
ସଭିଏଁ ଅଟୁ ସମାନ ॥



ଗୀତ—୨୪
ହିମଗିରି ଶିରେ ମୁକୁଟ ଯାର
ରତ୍ନାକର ସଦା ଧୁଏ ଯା ପୟର
ଭାରତ ଭୂଇଁ
ଆମର ଜନମ ଭୂଇଁ ଅଟଇ ॥
ସୁଜଳା ସୁଫଳା ଚିର ସୁନ୍ଦରୀ
ଗଙ୍ଗା ଗୋଦାବରୀ ଯା ସହଚରୀ
ସୁବକମଣ୍ଡୀ
ଉଲ୍ଲସିତ ପ୍ରାଣେ ନାଚ ଉଠଇ ॥
କେତେ ମୁନି ଋଷି ଜ୍ଞାନୀ ପ୍ରବର
ଜ୍ଞାନ ଧାରା ଢାଳି ଦେଲେ ଅପାର

ତାଙ୍କ ଆଗରେ
ମହାନ ଏ ଦେଶ ଯାର ବକ୍ଷରେ ।।
ଅହିଂସା ମନ୍ତ୍ରର ଶାନ୍ତିର ବାଣୀ
ସତ୍ୟ, ଧର୍ମ, କର୍ମ, ବେଦର ବାଣୀ
ଗୀତା ମହାନ
ଯା' ପାଇଁ ବ୍ୟାକୁଳ ଜଗତ ଜନ ।।
ଆମ ଜ୍ଞାନ ଗୁଣ ଶିଖିବା ପାଇଁ
ଆସନ୍ତି ବିଦେଶୀ ଦୂରରୁ ଧାଇଁ
ବସି ମାଟିରେ
ଶିଖିଲେ ବେଦକୁ ହରଷ ଭରେ ।।
ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅର୍ଜ୍ଜୁନ ବୀର
ରାମଚନ୍ଦ୍ର ଆଦି ଯୋଗ୍ୟ କୁମର
ଜନମ ହୋଇ
କୀରତି ରଖିଲେ ଯଗର ପାଇଁ ।।
ପଦ୍ମିନୀ ସାବିତ୍ରୀ ଅହଲ୍ୟା ସୀତା
କୁନ୍ତୀ ତାରା ସତୀ କେ ପତିବ୍ରତା
ଅହଲ୍ୟାବାଇ
ବୀର ନାରୀ କେତେ ମହତ ନେଇ ।।
ବ୍ୟାସ, ବାଲ୍ମିକ୍ ଯେ କାଳିଦାସ
ତୁଳୀ ଢ଼ାଳି କଲେ ଅଜ୍ଞାନ ନାଶ
ଗ୍ରନ୍ଥ ଲେଖିଲେ
ଜ୍ଞାନର ପ୍ରଦୀପ ଜଳାଇଦେଲେ ।।
ସରଗଠୁଁ ବଳି ଜନମ ଭୂଇଁ
ଜୀବନ ଯାଉ ମୋ ତାହାର ପାଇଁ
ଶପଥ ମୋର
ରଖିବି ଯଶ ମୋ ଦେଶ ମାଟିର ।।



## ଗୀତ – ୨୫

ଶୀତ ଦିନ ଯାଇ ବସନ୍ତ ହେଲା
ପିଲାଙ୍କ ମାନସ ନାଚ ଉଠିଲା
ମାଘ ପଞ୍ଚମୀ
ବୀଣାପାଣିଙ୍କର ପୂଜା ପଞ୍ଚମୀ

ଚାଟଙ୍କର ମନ ଉଚାଟ ଭରି
ରଜନୀ ଶେଷରେ ଯାଆନ୍ତି ଘର
କଳେ ପଶନ୍ତି
ଶ୍ରୀଫଳକୁ ଧରି ଦାଣ୍ଡେ ବୁଲନ୍ତି ॥

ବୀଣାପାଣିଙ୍କର ଗୀତକୁ ଗାଇ
ମେଲଣି ବାଢ଼ନ୍ତି ଗୁରୁଙ୍କ ପାଇଁ
ମେଲଣି ନେଇ
ଉଚାଟେ ବୁଲନ୍ତି ସାହିକୁ ସାହି

ମେଲଣି ପୂଜାକୁ ସଙ୍ଗତେ ନେଇ
ଚାଟଶାଳୀ ଘରେ ମିଳନ୍ତି ଯାଇ
ସମ୍ଭାର ଧୋଇ
ଗୁରୁଙ୍କୁ ନମନ୍ତି ହରଷ ହୋଇ ॥

ବାକ୍ ଦେବୀଙ୍କର ପୂଜାକୁ ନେଇ
ଖୁସିରେ ଫେରନ୍ତି ଆଶିଷ ନେଇ
ଧନ୍ୟ ମଣନ୍ତି
ଆନନ୍ଦ ମନରେ ପାଠ ପଢ଼ନ୍ତି ॥



ଗୀତ— ୨୬

ବେଦ ଧର୍ମରେ ଗୀତା ମର୍ମରେ
କର୍ମଟି ଏକା ସାର
ନିଷ୍କାମ ପଥେ ଈଶ୍ୱର ମତେ
ଜୀବନ ଅଟଇ ସାର

କର୍ମର ପଥ ଅତି କଠିନ କାନ୍ଦଇ ଜଗତ ନର
ମଙ୍ଗଳ ପଥେ ମୁଣ୍ଡ ନୁଆଁଏ ପୂଜାକୁ ବଢ଼ାଇ ତା'ର
ଏକଥା ନୁହେଁ କି ସାର...?

କର୍ମ ପଥରେ ଚାଲିଲା ବେଳେ
ବାସନା ସବୁ ତା'ର
ଆକାଶେ ଉଡ଼େ ସୁନେଲି ସ୍ୱପ୍ନେ
ନଥାଏ ଚେତ୍ଣା ତା'ର

ଆଶାର ନଈ ପ୍ରଖର ସ୍ୱଭାବେ ମଧୁର ଝର
ବେଳେ ତ ଜୀବନ ବେଳେତ ହୀନ
ବ୍ୟାପ୍ତ ବାଲି ପ୍ରାନ୍ତର
ଧର୍ମ ସିନା ଚାଲିବାର ।

ବନ୍ଧୁର ପଥେ ଦୁର୍ଗମ ସିନା
ପାହାଡ଼ ଚଢ଼ା ମନ
ପତନ ପଥେ ଥାପିଲେ ପାଦ
ଚୂଡ଼ାରେ ହସର ପ୍ରାଣ

ଯେତେ ତ ଜନ ସେତେ ତ ମତ ସଂସାର ପଥ ଏହି
ସବୁରି ପ୍ରାଣେ ସାନ୍ତ୍ୱନା ଦେଇ କର୍ମରେ ବଢ ଯାଇ
ଦେଖିବ ସ୍ୱାଦ ତାହାର ।

ଦୁଃଖର ବିନା ସୁଖ କି ଅଛି
ସଂସାରେ ଜୀବନର
ବିନା ଅନଳେ ସୁନା କି ଝଲେ
ରୂପ ଦେଖାଏ ତା'ର
ଉଦ୍ୟମ ପଛେ ଅସମ୍ଭବ କି ଅଛି କେ ଜାଣିବାର
ହୀନ ପଣରେ ସ୍ୱାର୍ଥ ଆଶାରେ ବୁଝୁନା ନର
ମନକୁ ଥରେ ପଚାର...?
ଆସହେ ଧାଇ କର୍ମ ପଥରେ
ସୁଖରେ ବଞ୍ଚିଯିବା
ସବୁର ଆଶା ବାସନା ପଥେ
ହରଷ ମନେ ଥିବା
ମୋହ ସ୍ୱାର୍ଥରେ ସୁଖତ ନାହିଁ କର୍ମ ସାଥେ ସବୁଅଛି
ଜ୍ଞାନରପଣେ ଗଲେତ ଧାଇଁ ବେଦ ସବୁ ସୁଖ ଅଛି
କଥା କି ଅଛି ଅସାର...?



ଗୀତ—୨୭

ମଣିଷ ଆମେ ଏ ଧରା ପରେ
କାମ ଆମର ସାର
ନାହିଁତ ଆମ ଜାତ ଅଜାତ
ଗୁଣର ପଥେ ସାର
ଶିଳ୍ପୀ ଆମେ ଶ୍ରମିକ ଆମେ
ବଣିଆ, ମିସ୍ତ୍ରୀ, ତନ୍ତ୍ରୀ
କୁମ୍ଭାର ଆମେ କମାର ଆମେ
ତେଲି, ବ୍ରାହ୍ମଣୀ ଜାତ ॥

ନିଜ ନିଜର କାମକୁ କରୁ
ନାହିଁ ତ ଅବସ୍ତର
ସଭିଏଁ ଆମେ ଏକା ମା ଆର
ପିତା ଆମ ଈଶ୍ବର ।।
ଗୁଣର ପଥେ ସାଧନା ପଥେ
କାମରେ ବଢ଼ି ଯାଉ
ନୂଆଁ ଆଶାରେ ଧାର ପଥରେ
ଜୟ ଗୀତିକା ଗାଉ ।।
ଆମର ଲାଗି ସଡ଼କ ସେତୁ
ମଠ, ଦେଉଳ, ଗଡ଼
କାରିଗରୀରେ ଜଗତେ ହିନା
ହୋଇଛୁ ଆମେ ବଡ଼ ।।
ପଥର ବନ୍ଧ ଗୋଲା ବାରୁଦ
କଳ ଓ କାରଖାନା
ଆମର ହାତେ ଗଢି ତ ସବୁ
ଉଡାଇ ଦେଶ ବାନା ।।
ଉଡ଼ାଜାହାଜ ବୁଡ଼ାଜାହାଜ
ବିଜ୍ଞାନ ପଥେ ମାତି
କର୍ମର ଜୟ ଗାଉରେ ଆମେ
ମାନୁନା ଦିନ ରାତି ।।
ଜାତି ଭେଦରେ ହିଂସା ପଥରେ
କି ଅଛି ଭାଇ ଏଠି
ଆସ ହେ ଭାଇ ସଭିଏଁ ଏକା
ମାତାରେ ଦେବା ଭେଟି ।।

କର୍ମ ଜୀବନ           କର୍ମ ଶରଣ
କର୍ମରେ ସିନା ବଡ
ଜାତି ଭେଦରେ       ସ୍ୱାର୍ଥ ଭିତରେ
ଅଛି କେ କେହି ବଡ଼ ?



ଗୀତ—୨୮

ପଶୁ, ପକ୍ଷୀ, କୀଟ, ପତଙ୍ଗ, ନର
ସବୁଙ୍କର ପିତା ସେହି ଈଶ୍ୱର
ପାଳି ଅଛନ୍ତି
ଉପକାର ପଥେ ସବୁ ବଞ୍ଚନ୍ତି ।।
ସଭିଏଁ ସଭିଙ୍କୁ ଆଶ୍ରା କରନ୍ତି
ନିଜ ନିଜ କର୍ମେ ସୁଖେ ବଞ୍ଚନ୍ତି
ଜୀବନ ଧର୍ମ
ଉପକାର ପଥେ ବୁଝାନ୍ତି ମର୍ମ ।।
କାଉ, ଚିଲ, ଶ୍ୱାନ, ଶୃଗାଳ ଯେତେ
ଆବର୍ଜନା ନେଇ ଆହାର ପଥେ
ପରିବେଶକୁ
ସୁଖରେ ରଖନ୍ତି ସଂସାରଟାକୁ ।।
କୀଟ କୁଳ ଜନ୍ମ ଅସଙ୍ଖ୍ୟ ଥର
ପକ୍ଷୀ କୁଳ ସବୁ କରେ ଆହାର
ସଂସାର ପଥେ
ନିର୍ମଳ କରନ୍ତି କୀଟ ତ ଯେତେ
କୁକୁର, ବିରାଡ଼ି ଘରେ ରହନ୍ତି
ଉପକାରୀ ପଣେ ଯୋଗ୍ୟ ଅଟନ୍ତି
ଅତି ବିଶ୍ୱାସୀ
ସେବା ପଣେ ପ୍ରାଣ ଅତି ସାହସୀ

ଗୀତ—୨୩

ଗାଈ ତ ଗୋ-ମାତା ଦେବଆ ସଦେ
ଛେଳି ମେଣ୍ଢା କ୍ଷୀର ମିଳେ ଯତନେ
ଅମୀୟ ରସ
ଜୀବନ ଧାରଣେ ସବୁର ଆଶ ।।
ନାନା ପଶୁ ପକ୍ଷୀ ଗ୍ରବକୁ ନେଇ
ସ୍ୱର ତାଳ ଲୟ ଅଛି ତ ରହି
ପ୍ରତି କଥାରେ
ଆନନ୍ଦ ବଢ଼ାଏ ଆମ ମନରେ ।।
ପ୍ରାଣୀଙ୍କ ଆୟୁତ ସୁରକ୍ଷା ପାଇଁ
ବାଘ, ସିଂହ ପ୍ରଭୁ ଅଛନ୍ତି ଦେଇ
ବଣର ରାଜା
ସୁଖେ ରାଜ ପଣେ ପାଳନ୍ତି ପ୍ରଜା ।।
ଶୁକ, ଶାରୀ, ପକ୍ଷୀ, କୋଇଲି ସାର
ଚିତ୍ତ ସାନ୍ତ୍ୱନାରେ ବୋଲନ୍ତି ସ୍ୱର
ଦେଖ ମୟୂର
କେଡ଼େ ମନୋହର ପୁଚ୍ଛ ତାହାର ।।
ନାନା ପଶୁ ପକ୍ଷୀ ଅସଂଖ୍ୟ ପ୍ରାଣୀ
ସୁଖେ ଚଳୁଥିଲେ ଏଇ ଧରଣୀ
ମୁକ୍ତ ପଥରେ
ସୁଖୀ ଥିଲେ ପ୍ରାଣେ ଏଇ ଧରାରେ ।।
ଅଜ୍ଞାନୀ ମଣିଷ ଜ୍ଞାନ ବୁଡ଼ିଲି
ଈଶ୍ୱର ସଂସାର ମତ ତେଜିଲି
ସୁଖର ପାଇଁ
ବନାଶିଲି କୂଳ ପ୍ରାଣୀର ଯାଇ

ସବୁ ପ୍ରାଣୀ କୁଳେ ଶତ୍ରୁ ହୋଇଲ
ବଂଶ ନାଶ କରି ଦୁଃଖ ବାଢ଼ିଲା
ଅଭୟାରଣ୍ୟ
କୁହିମରେ ଜାଣ ଦେଖ ଅରଣ୍ୟ ।
ଅମୁଲ, ହର୍ଲିକ୍ସ କ୍ଷୀର ପିଇଲେ
କି ଶକ୍ତି ବଢ଼ିବ ଦେହରେ ପିଲେ
ଜୀବନ ଥିବ
ପ୍ରକୃତ ଶକ୍ତି କି ଶରୀରେ ହେବ ।।
ମୁକ୍ତି ଅଟଣା ତ ଏ ଦରକାର
ଇଚ୍ଛା ପଥେ ଯିବା ଜୀବନ ସାର
ପିଞ୍ଜରା ପରେ
ଟୁକ କଥା ମନେ ବିଚାର ଥରେ ।।
ଇଚ୍ଛାମତେ କିବା ବୁଲି ଚରଇ
ଖୁସି ମନେ କେବେ ଗୀତକି ଗାଇ
ଅଭୟାରଣ୍ୟେ
ଦେଖ ଓ ପଶୁ ଏଛନ୍ତି ଦଇନ୍ୟେ ।।
ଦେଖି ତାଙ୍କୁ ମନେ ତୋଷ ହେଉଛୁ
ମନ ଦୁଃଖ କଥା କିବା ବୁଝୁଛୁ
ହୃଦୟହୀନ
କୃତଘ୍ନ ଆମର ମଣିଷ ଜନ୍ମ ।।
ଆମ ସୁଖ ପାଇଁ ଆମର ଗର୍ବ
ଆମକୁ ନଅଣ ସଂସାର ସର୍ବ
ଶେଷେ ସରବ
ଦୁଃଖ ଯନ୍ତ୍ରଣାରେ ଜୀବନ ଯିବ ।।
ଆଜି ହେଲେ ଜାଗ ମଣିଷ ଧାଇ
ସଭିଏଁଙ୍କୁ ଟିକେ ହୃଦୟ ନେଇ
ଈଶ୍ୱର ଧ୍ୟାୟି
ସ୍ନେହ ପ୍ରେମ ନେଉଥିବା ଏ ମହୀ ।।



ଗୀତ—୨୯

ଅସ୍ତାଚଳ ରବି ବୁଡ଼ୁଛି ଦୂର ଶଇଳ ଶିଖେ
ବିଦାୟ ମେଲ୍ଣି ମାଗଇ ରକ୍ତିମାର ବିମୁଖେ
କର୍ମ ପ୍ରାଣେ ହର୍ଷ ଉତ୍କଣ୍ଠ
ବ୍ୟସ୍ତ ମନ ତା ନେଇ
ଗୃହ ମୁଖେ ଫେରେ ବିହଙ୍ଗ
ମନେ ଉଛାଟ ହୋଇ ॥
ନାନା ରବେ ନାନା ଗ୍ରବରେ
ସ୍ୱର ତୋଳି ଆକାଶେ
ମୁକ୍ତାଗ୍ରୀ ମୁକ୍ତେ ଉଡ଼ନ୍ତି
ନୀଡ଼ ଧରିବା ଆଶେ ॥
ତାହୁଲ ବଡ଼ାଲ ଶୃଗାଲ
ଧାଇଁ ପଶନ୍ତି ଗାତେ
କେତେ ଉଛନ୍ନ ସେ ଯିବାକୁ
ନିଜ ବାସର ପଥେ ॥
ବାଙ୍ଗାନର ମୋହ ସୁଷମେ
ଆଜି ଧରଣୀ ଶୂନ୍ୟ
ପ୍ରକୃତ ବିନାଶେ ନାହିଁ ତ
ପଶୁ ପକ୍ଷୀ କାନନ ॥
ଧନ୍ଦ ଧନ ଭୋଗ ବାସନା
ମନେ ଜାଗ୍ରତ ହୁଏ
ବରଷା ଆଗମେ ଛତ୍ରୁତ
ସବୁ ଉଠିଲା ପ୍ରାପ୍ୟେ ॥

ଦିବା ଆଲୋକର ମୋହରେ
ଝଡ଼ି ପଡ଼େ ପତଙ୍ଗ
ସେହି ପ୍ରାୟେ ବନନା ଶକ୍ତି
ଏଠି ନର ପୁଙ୍ଗବ ॥
ଦିନୁଦିନ କ୍ଷୟ ହେବାରେ
ବନ ପ୍ରାଣୀ ଜୀବନ
ସ୍ମୃତି ସବୁ ଜାଗି ଦେବାରେ
କଲି ଅଭୟାରଣ୍ୟ ॥
ବଚନର ପ୍ରାଣୀ ଦେଖିବା
ମନେ ବାସନା ନେଇ
ଆସିଛି ନନ୍ଦନ କାନନ
ଦୁଃଖି ତେଣୁ ମୁଁ ଥାଇ ॥
ଗଗନେ ଦେଖିଣ ପକ୍ଷୀଙ୍କୁ
ମନେ ବିରସ ଅସେ
କେତେ ସୁଖେ ଉଡ଼ୁ ଅଛନ୍ତି
ପକ୍ଷୀ ନୀଡ଼ ଉଦ୍ଦେଶ୍ୟ ॥
ଏ ଘର ମଧ୍ୟରେ ପକ୍ଷୀଏ
ଦୁଃଖେ ବଞ୍ଚିଅଛନ୍ତି
ବନ୍ଦୀ ପ୍ରାଣେ କିଵା ସୁଖ ସେ
ଦିବ ଭାବ କାନ୍ଦନ୍ତି ॥
ଦିବାନିଶି ସୁଖ ଦୁଃଖତ
ତାଙ୍କ ଏ ବନ୍ଦୀ ପଥ
ଜନ୍ମ ମୃତ୍ୟୁ ପଥ ଏ ବିନା
ନାହିଁ ତାଙ୍କ ମହତ ॥

ବର୍ବର ମାନସ ବଞ୍ଛାନୀ
ଜ୍ଞାନ ହୋଇଛି ହତ
ଚହ୍ନିନ ଆଜି ସେ ଜୀବନେ
ପ୍ରାଣେ ପ୍ରାଣ ମହତ ||
ମୁକ୍ତାଗୃରୀ ପଣେ ଏ ଧାମେ
ଜନମିଲେ ସେ ଯିନା
ମାନବରେ ବନ୍ଦୀ ହୋଇଲେ
ଘେନି ନାନା ଯାତନା ||
ବ୍ୟାଘ୍ର ବନରାଜ ହସ୍ତୀ ଏ
ବଳୀ ବଳରେ ଯିନା
କୁର୍ଦିମରେ ଟାଣ ମାନବ
ଏବେ କରୁଛି ଘେନା ||
ସବୁର ଘଟରେ ଈଶ୍ୱର
ରହି ସୃଷ୍ଟି ଗଢ଼ିଛି
ସବୁର ପଥରେ କଣ୍ଟାକୁ
ଧୀରେ ବଢ଼ାଇ ଅଛି ||
ଏ ଧରା ଧାମରେ କେହ୍ନତ
ନୁହେଁ ବଡ଼ ବା ସାନ
ସବୁର ପଥରେ ମହତ
ଅଟଇ ସେ ଭଗବାନ ||
ତେଣୁ ହେ ପକ୍ଷୀ ପଶୁ ଏ
ଘେନ ମୋର ବେଦନା
ଦୁଃଖି ଯିନା ତୁମ ପାଇଁ ମୁଁ
ନାହିଁ ମୋର କରୁଣା ||

ଛାଡ଼ ମାନବ ମୁଁ ବର୍ବର
ହୀନ ମତ ମୋହର
ତୁମ ଦୁଃଖ ପାଇଁ ଯୋଡ଼ୁଛି
ବାହୁ ପାଦେ ମୋ କର ॥
ହେ ଯେବେ କରୁଣା କରିବେ
ଦୁଃଖ ଯିବ ତୁମର
ଅପାର ବିମତ ମେଣ୍ଟିବ
ଦୁଃଖ ଯିବ ତୁମର ॥
ପୁଣି ଏ ଧରାରେ ପ୍ରକୃତ
ଖିଲ ଖିଲ ହସିବ
ତା କୋଳେ ତୁମର ଲୀଳାକୁ
ସୁଖେ ଆଚରୁଥିବ ॥
ତୁମ ଉପକାର ପଥକୁ
ମୋହ ଜାଡ ଲେଡ଼ିବ
ଜାନ କଳ୍ପ କର୍ମ ପାଇଁ କି
ତୁମ ଯତ୍ନ କରିବ ॥
ଏଣୁ ହେ ସକଳ ଜୀବନ
ଚନ୍ତା ସେ ଭଗବାନ
ହୀନ ଦୁଃଖ ଭାର ବନ୍ଧଣ
ଯାଉ ଅଛୁ ସଦନ ॥



ଗୀତ—୩୦

ବିଶ୍ୱ ମାତୃଭୂମି
ମୋ ଭାରତ ଭୂମି
ସାଧନାର ତପ ଭୂମି
ଯା ମାଟି କାନନେ ମନ୍ତ୍ର ଧ୍ୱନି ଉଠେ
ସାଧନାର ପଥେ ଯା ସନ୍ତାନ ଉଠେ
ସେ ଭୂମି ମୋ ଭୂମି
ମୋର ମାତୃଭୂମି ।।
ସାଧନାର ତପ ଭୂମି ।।
ମୁନି ଋଷିଙ୍କର ବିଶ୍ୱ ଭାବନାର
ଚିର ବନ୍ଦନୀୟା ସଂସ୍କୃତି ସ୍ମୃତିର
ଶାନ୍ତି ପ୍ରଣୟିନୀ
ସୁଧା ମଧୁ ଘେନି
ମଥା ଯାଏ ଆପେ ନମି ।।
ସାଧନାର ତପ ଭୂମି ।।
ତା କଳା ଭାସ୍କର୍ଯ୍ୟ ସଦା ମହନୀୟ
ଭ୍ରାତୃ ପ୍ରୀତି ତା'ର ଅଟଇ ସ୍ୱକୀୟ
ଜଗନ୍ନାଥ ଧର୍ମ
ସବୁ ସାର ମର୍ମ
ସଭିଏଁ ଈଶ୍ୱର ପ୍ରେମୀ
ସେଇ ମୋ ଜନ୍ମ ଭୂମି



ଗୀତ— ୩୧

ଧରାର ପରେ ମାଟି ଉପରେ
ସ୍ନେହ ମମତା ଯେଉଁଠି ଝରେ
ଜୀବନ ହସେ ନାହିଁ ସୁଖରେ
ସେହି ତ ଆମ ଘର ॥
ସୁଖ ଦୁଃଖର ହସ କାନ୍ଦର
ଖରା ବରଷା ଶୀତ କାକର
ସବୁର ପଥେ ସାଥି ଧରାର
ସେଇତ ଆମ ଘର ॥
ଯାହାର କୋଳେ ଜନମ ହେଲି
ଏନ୍ତୁଡ଼ି ଶାଳେ କାନ୍ଦ ଗଢ଼ିଲି
ଏରୁଣ୍ଡି ଝୁଣ୍ଟି ଶିଖିଲି ଚାଲି
ସେଇତ ଆମ ଘର ॥
ସରଗୁ ବଡ଼ ପିତା ମୋହର
ଧରାଠୁ ବଡ଼ ମାଆ ମୋହର
ସଦା ବହେ ଯହୁଁ ଆଶିଷ ଧାର
ସେଇତ ଆମ ଘର ॥
ପିତା ମୋହରେ ବଂଶ ସ୍ମୃତିରେ
ଜୀବନ ଗର୍ବ ଯେ ପ୍ରାଣେ ଧରେ
ସ୍ୱର୍ଗ ସେ ଅଟେ ଏ ଧରା ପରେ
ସେଇତ ଆମ ଘର ॥
ଯାହାର ପାଇଁ ରକତ ପାତ
ପିଏତ ପ୍ରାଣେ ମାନ ମହତ
ଯା ପାଇଁ ସ୍ୱପ୍ନ ଧରଇ ବ୍ରତ
ସେଇତ ଆମ ଘର ॥

ସବୁ ଦୁଃଖରେ ସବୁ ସୁଖରେ
ସ୍ୱପ୍ନଟି ସଦା ପଛରେ ଘାରେ
ସବୁ ସୁଖର ଥାଏ ପଛରେ
ସେଇତ ଆମ ଘର ॥
ଯାହାକୁ ଦେଖ ଯାହାକୁ କହ
ସବୁର ମନେ ଗୋଟିଏ କୋହ
ଯାକାର ପଥେ ମନ ଅଥୟ
ଗୃହହିଁ ସେ ଖାଲି ଘର ॥

॥ ଗୀତ—୩୨

ନିଶି ନାଶ ହେଲା ଧରାରୁ
କାକ କୁଳୁକୁଳ ରାବେ
ଗୃହ ବିଳାସିନୀ ଜାଗିଲେ
ନିରଳସ ଗରବେ ॥
ଉଆଁସୀ କନିଆ ଛାଡ଼ିଲେ
ଧରା ସଧୀର ହାସେ
ଦୂର ଶିଖେ ହସି ସବିତା
ମୃଦୁ ପାଦରେ ଆସେ ॥
ରକ୍ତିମା ଅମ୍ବରେ ଗଗନ
ଦିଶେ ସିନ୍ଦୂର ମୟ
ମନେହୁଏ ନବ ବାଳା କି
ଯାଏ ଶ୍ୱଶୁରାଳୟ ॥
କି ବା ରଙ୍ଗ ସବୁ ପଡ଼ିଛି
ବଧୂଙ୍କର ଅଙ୍ଗନେ

ଚରାଚର ପ୍ରାଣ ହସୁଛି
ତେଣୁ ଅତି ଯତନେ ॥
ଗୃହ ଲକ୍ଷ୍ମୀ ଗୃହ ସଂଜାଡ଼ି
ସ୍ନାନ ଘାଟକୁ ଗଲେ
ବସା ଛାଡ଼ି ଖଗ କୁଳଟି
ଯେଝା କର୍ମରେ ଗଲେ ॥
ନିଶାଚର ନିଶାଚରୀ ଏ
ଦିବା ଆତପ ଗଣି
ପଶିଲେ ବିବର ଭିତରେ
ଯେଝା ସୁଖକୁ ମଣି ॥
କୃଷୀ ପ୍ରାଣ ମନ ଉସତ
କ୍ଷେତ ପରେ ହସିଲା
ହାଟୁଆର ମନ ପ୍ରସନ୍ନ
ଘର ଧରି ଧାଇଁଲା ॥
ଗୋପାଳ ଗୋଗୋଷ୍ଠ ଧରିଣ
ଦେଖ ପ୍ରାନ୍ତରେ ହସେ
ଗୋପାଳୁଣୀ ଧରି ଗୋରସ
ଦ୍ୱାରେ ଦ୍ୱାରେ ପ୍ରବେଶ ॥
ନିଜ ନିଜ କର୍ମ ଘେନିଣ
ଚଲେ ସକଳ ପ୍ରାଣୀ
ଉଲ୍ଲସିତ ସବୁ ପରାଣ
ବିଭୁ ବିଧାନ ଘେନି ॥
ଗ୍ରତ ଦେବାଳୟେ ଶୁଭିଲା
ଘଣ୍ଟା, ମାଦଳ ଧ୍ୱନୀ

ମଙ୍ଗଳ ଆଳଥ ସଙ୍ଗତେ
ପଶୁ, ପକ୍ଷୀଙ୍କ ଧ୍ୱନି ॥
ଧ୍ୱନି ନୁହେଁ ଅନ୍ତରାତ୍ମାର
ନିବେଦନ ବେଶ୍ୱର
ଶୁଭେ ଯାଉ ଆଜି ଦିନ ହେ
ପ୍ରଭୁ ପରମେଶ୍ୱର ॥
ନିଜ ନିଜ କର୍ମେ ବଢ଼ନ୍ତି
ଧରି ଯେଝା ବିଧାନ
ହରଷିତ ପ୍ରାଣୀ ସକଳ
ଦିଶେ ଧରା ଶୋଭନ ॥



ଗୀତ—୩୩

ବରଷା ହେଲେ ଧରା ପିଠିରେ
ବହେତ ଖାଲି ଜଳ
ଗରମ ହେଲେ ଖରା କାଳରେ
ଦେହରୁ ବହେ ଝାଳ ॥
ମରମ ବାଧା କଥା ଶୁଣିଲେ
ଆଖିରୁ ବହେ ଜଳ
ମିଛ କଥାରେ ବିପଦ ହେଲେ
ବହେ ବେଦନା ଜଳ ॥
ଆଘାତ ହେଲେ ଶିଶୁ କାନ୍ଦିଲେ
ଦେଖ ସେ ଲୁହଲୁହ
ଖୁସି ହୋଇଲେ ଆଶା ପୁରିଲେ
ଦେଖ ଆଖିରୁ ଜଳ

ଘୋର ବିପଦେ କଥା ନ ଫୁଟେ
ହୃଦ ବେଦନା ଜାଲ
ଆଖି କୋଣରୁ ଉଛୁଳାଏ ସେ
ଧାରକୁ ଧାର ଜଲ ॥
ଭାବରେ ସିନା ଭିନକୁ ଭିନ
ସବୁତ ଏକା ଜଲ
ସୁଖ ଦୁଃଖରେ ଜୀବନ ପଥେ
ଅଟେ ସେ ଏକା ବଲ ॥

ଗୀତ—୩୪

କହେ ସୁଭାଷ, ଶୁଣ ସନ୍ଦେଶ
ମୋ ବନ୍ଧୁ ସକଲ ଭାଇ
କିଏ ବିଦେଶୀ କିଏ ସ୍ୱଦେଶୀ
ସଭିଙ୍କ ମାତା ଏ ମହୀ ।।
ଜାଗ ମାତାର ପାଇଁ—୨
ପରାଧୀନର ଶିକୁଳି ତଳେ
ମାତା ମୋ ହୀନମାନ
ଅନ୍ତର ତଳେ ଚପାଇ କୋହ
ମାଗୁଛି ସନମାନ
ମାତାର ମାନ ଆମ ସମ୍ମାନ ତାଲାଗି ଜୀବନ ଯାଉ
ତା' ପୂଜା ବିନା ଜୀବନେ କିବା ସମ୍ମାନ ଅଛି ଆଉ
ଏ କଥା ହେଜ ହେ ଭାଇ...୨
କି ହେବ ଏଇ ମାନ ସମ୍ମାନ
ମାତୃଭୂମି କାନ୍ଦୁଥିଲେ

କି ହେବ ଏଇ ଦର୍ପ ଜୀବନ
ପୁତ୍ର ବୋଲି ବୋଲାଇଲେ
ସ୍ୱାର୍ଥ କପଟ ମନରୁ ତେଜି ଦେଶ ଜାତି
ପୂଜା ଦେବ ।
ସ୍ୱବୁଦ୍ଧ ସୁଖେ ସୁଖି ତ ହୋଇ ଯୋଗ୍ୟ ପୁତ୍ର
ବୋଲାଇବ ।
ଜନନୀ ମହତ ପାଇଁ...
ଆସ ଯିବା ଏକ ହୋଇ-୨



ଗୀତ—୩୫
ବାରମାସେ ତେର ଓଷା ପୁନେଇଁ
ଆମ ଓଡ଼ିଶାରେ କାଳିଆପାଇଁ
ବରଷ ସାରା
ଲାଗି ରହିଥାଏ ଯାନି ଯାତରା ।।
ଆଦ୍ୟ ମାର୍ଗଶୀର ସେ ଗୁରୁବାର
ବସିଥାଏ ମାତା ଓଡ଼ିଆ ଘର
ଆସିବେ ଲକ୍ଷ୍ମୀ
ସୁନା ଫସଲରେ ହସିବ ଜମି ।।
ପୁଷ ମାସେ ଶାମ୍ବ, ବୁଢ଼ା ଚକୁଳି
କାହା ଘରେ ପିଠା, ଖେଚୁଡ଼ି, ଖିରି
ପିଲାଙ୍କ ପାଇଁ
ବାଢ଼େ ଓଡ଼ିଆଣୀ ସ୍ୱରୁକେ ଗୁହିଁ ।।
ମାଘ ମାସେ ପଡ଼େ ଶିରୀପଞ୍ଚମୀ
ଚନ୍ଦ୍ରଭାଗା ବୁଡ଼ ମାଘ ସପ୍ତମୀ

ମକର ମେଳା
ମଠ ମନ୍ଦିରରେ ଲାଗଇ ଲୀଳା ।।
ଫଗୁଣ ମାସରେ ଦୋଳ ଯାତ୍ରା
ବାଟରେ ନଥାଏ ପାଣି ବୋତଲ
ଦୋଳ ଗୋବିନ୍ଦ
ବୁଲନ୍ତି ଗାଆଁରେ ହୋଇ ଆନନ୍ଦ ।।
ଚଇତ୍ର ମାସରେ ଦଣ୍ଡ ଯାତ୍ରା
ମା ମଙ୍ଗଳା ତ ସାହାନ୍ତି ପରା
ନାଚଇ ଘୋଡ଼ା
ଗ୍ରାମେ ଗ୍ରାମେ ଗୃହେ ନାଚ ଆଖଡ଼ା ।।
ବଇଶାଖ ମାସେ ଅକ୍ଷିତୃତୀୟା
ଓଡ଼ିଆ ଘରେ
ପିଠା ପଣା ସାଥେ ଆନନ୍ଦ ଝରେ ।।
ଜ୍ୟେଷ୍ଠ ମାସରେ ରଜ ପରବ
ଓଡ଼ିଶା ମାଟିର ବଡ଼ ଗରବ
ରଜ ମଉଜ
କାଣ୍ଡେ ପୋଡ଼ ପିଠା ନୂଆଁ ଭୋଜନ ।।
ଆଷାଢ଼ ମାସରେ ଗୁଣ୍ଡିଚା ଯାତ
ରଥରେ ବସନ୍ତି ଜଗତନାଥ
ଜଗତ ସାଇଁ
ଜନ ଦରଶନେ ଆସନ୍ତି ଧାଇଁ ।।
ଧାନ ଶିଖବଣେ ଗହ୍ମା ପୁନେଇ
ଓଡ଼ିଆ ଘରକୁ ଆସନ୍ତି ସାଇଁ
ଏଣ୍ଡୁରୀ ପିଠା
ଖାଇ କ୍ଷୀରି ପିଇବେ ସଲିକ ମଠା ।।

ଖୋଦୁଅ ମାସକର ହର ଜନମ
ସବୁର ସାହରେ ହରଙ୍କ ନାମ
ଖୁଦୁରୁକୁଣି
କୁମାରୀ ପୂଜନ୍ତି ସେ ଖୁଲୁକୁଣୀ ॥
ଆଶ୍ୱିନ ମାସରେ ଦେବୀ ଦଶର୍
ଆକାଶରେ ମେଘ ନଥାଏ ଖର୍
ସବୁର୍ ଘରେ
ପିଠା ପଣା ସାଥେ ଆନନ୍ଦ ଝରେ ॥
ମାସଙ୍କ ଭିତରେ ମହାକାର୍ତ୍ତିକ
ପଡ଼ଇ କାକର ଶୀତ ରତିକ
ହବିଷ ଅନ୍ନ
ସମସ୍ତେ ରାନ୍ଧନ୍ତି ପୁନେଇଁ ଦିନ ॥
ବାରମାସେ ତେରପର୍ବ ସରଲା
ଜଗନ୍ନାଥ ପାଦେ ମନ ରହିଲା
ପ୍ରଣାମ ଦେଇ
ରହୁଛି ପିଲାଏ ଭୁଲିବ ନାଇଁ ॥



ଗୀତ—୩୭

ଏକସୂତ୍ରେ ବାନ୍ଧିବାକୁ ଏ ଭାରତ ଜାତିରେ
ଜନ୍ମ ନେଲ ବାପୁଜୀ ହେ ଏ ଭାରତ ମାଟିରେ
ସତ୍ୟ ଦୂତ ଗାନ୍ଧୀ ଶୈଶବରୁ ହେଲ ପ୍ରକାଶ
ବିଦେଶୀ ତାଡ଼ନା ମନେ ଦୁଃଖ ଦେଲା ଅଶେଷ
ଅହିଂସାର ମନ୍ତ୍ର ବୁଣି
ଦେଲ ସାରା ଦେଶରେ
ଜନ୍ମନେଲ ବାପୁଜୀ ହେ... .....॥

ବୁଦ୍ଧ, ଯୀଶୁ ରାମକୃଷ୍ଣ, ରାମାୟଣର ବାଣୀ
ଶିବାଜୀ ରାଣା ଗୋବିନ୍ଦ ବଳିଦାନ କାହାଣୀ
ଭରିଦେଲା ଦେଶ ପ୍ରୀତି
ତବହୃଦ କନ୍ଦରେ
ଜନ୍ମନେଲ ବାପୁଜୀ ହେ.........||

ଚରଖାକୁ ବାଣ୍ଟିଦେଲ ପ୍ରତି ଘର ଘରରେ
ଜାଗରିତ ହେଲା ଦେଶ ରାମ, ଆଲ୍ଲା ମନ୍ତ୍ରରେ
ସ୍ୱାଭିମାନ ଜଗାଇଲ
ପ୍ରତି ହୃଦ କନ୍ଦରେ
ଜନ୍ମନେଲ ବାପୁଜୀ ହେ.........||

ସହି କେତେ ଲାଠି ମାଡ଼ ସଙ୍ଗେ ଜେଲ ଯାତନା
ଜୀବନେ କରମ ପଥୁ ହୋଇ ନାହିଁ ବିମନା
ସ୍ୱାଧୀନତା ଆଣି ଦେଲ
ଏ ଭାରତ ପାଇଁରେ
ଜନ୍ମନେଲ ବାପୁଜୀ ହେ....... ||

ରାମ ରାଜ୍ୟ ସ୍ୱପ୍ନ ତବ ରହିଗଲା ମନରେ
ପ୍ରାଣଦାନେ ଏ ଭାରତ ଦେଲା ଗୁଳି ମାଡ଼ରେ
ଯଶ କୀର୍ତ୍ତି ରହିଗଲା
ଯୁଗେ ଯୁଗେ ବିଶ୍ୱରେ
ଜନ୍ମନେଲ ବାପୁଜୀ ହେ.........||



ଗୀତ—୩୭

ଏ ଦେଶ ଆମର ଜନ୍ମଭୂମି
ଏଇତ ଆମର ମାଆ...୨
ହିମାଳୟ ଯାର ମୁକୁଟ ସମ୍ଭାର
ରତ୍ନାକର ସଦା ଧୁଏ ଯା ପୟର
ସେହି ମୋର ମାତା
ସେହି ମୋର ଧାତା
ଭାରତ ତାହାର ନାଁ..... ......୨
ଗଙ୍ଗା ଗୋଦାବରୀ ଗୋମତୀ, କାବେରୀ
କୁଳୁକୁଳୁ ନାଦେ ଦିବସ ଶର୍ବରୀ
ଗାଆନ୍ତି ତା ଯଶ
ଯୁଗ ଇତିହାସ
ସେହି ତ ଆମର ମାଆ........୨
ଭଗତ ଆଜାଦ୍ ଲକ୍ଷ୍ମଣ ଆବର
ଜୟୀ ରାଜଗୁରୁ କେତେ ସୁରବୀର
ତାର ଯଶ ପାଇଁ
ଦେଇଗଲେ ଶିର
ରଖିଲେ ତାହାର ନାଆଁ..... ...୨
ଗାନ୍ଧୀ, ଗୋପବନ୍ଧୁ ,ସୁଭାଷ, ସର୍ଦ୍ଦାର
ଶିବାଜୀ ପ୍ରତାପ ବୀର ସୁରେନ୍ଦ୍ର
ସ୍ୱାଧୀନତା ପାଇଁ
ସକଳ ତେଜିଲେ
ଫେରାଇଲେ ତା'ର ନାଆଁ.........୨
ତା ପାଣି ପବନେ ଗଢ଼ା ଏ ଶରୀର
ତା'ର ସେବାଲାଗି କଟୁ ପଛେ ଶିର

ହରିବନ ମୁହିଁ
ମାତା ସେବା ପାଇ
ଟେକବ ତାହାର ନାଆଁ........୨
ଏଇତ ଆମର ମାଆ............୨



ଗୀତ—୩୮

ଗାଁଟି ମୋର ଅତ ନଜର
ତା'ପର କେହ୍ହ ନାହିଁ
ପୋଖରୀ କୂଳେ ମନ୍ଦର ଘେରେ
ମନ ମୋ ଲଏ ମୋହି ।।
ତା ଧାନ କ୍ଷେତ ସବୁଜ ଶିର
ମନେ ସରସ ଟାଣେ
ହୃଦେ ପୁଲକ ମନମହକ
ସରଲ ରେଣୁ ବୁଣେ ।।
ସରଲ ଛନ୍ଦେ କୁଆଁରୀ ନାଚେ
କର୍ଣ୍ଣ ଓଷାଟି କର
କେତେ ମାଁ ବସି ହବଷ କଭେ
କାର୍ତ୍ତିକ ବୁଡ଼ ପାର ।।
ସଞ୍ଜବେଲରେ ଦେବ ମନ୍ଦରେ
ବାଜଇ ଘଣ୍ଟ ଢୋଲ
ସଂଧ୍ୟା ଆଲତୀ ଘର ଘରକେ
ଦେବ ମାନସେ ଭୋଲ ।।
ଧୀର ସମୀର ହସାଏ ଧବ୍
ନଈର ପଠା ପରେ

ଜନେ ହସନ୍ତି କଥା ଭାଷନ୍ତି
କର୍ମ କ୍ଳାନ୍ତ ଛାଡ଼ଦୂରେ ।।
ନାନା ଗଛରେ ନାନା ଗୁଳ୍ମରେ
ଫୁଲନ୍ତି ଭାର ଭାର
ସରଲ ମନେ ଚପଲ ଧନେ
ତୋଳନ୍ତି ଭାର ଭାର ।।
ଶିଶୁ ଖେଳରେ ମନ ମଜାରେ
ଦେଖ ସେ ବାଲ୍ୟ ଲୀଳା
ଛନ୍ଦ କପଟ ଭେଦ ଅଭେଦ
ଦେଖ ସେ ଗୋପ ଲୀଳା ।।
ପଡ଼ିଆ ପରେ ଘାସ ଶେଜରେ
ଗଉଡ଼ ପିଲା ଖେଳ
ପଥ ପଥରେ କୁଆଁରୀ କୂଳ
କଣ୍ଠରେ କୋଳାହଳ ।।
ଦେବ ଉତ୍ତମ ସେ ଅନୁପମ
ମନ ମତାଇ ନିଏ
ମାଆଠୁ ବଳି ଗାଁଟି ମୋର
ମମତା ବାଢୁଥାଏ ।।
ଅସୁ ଆପଦ ପଡ଼ୁ ବିପଦ
ମାଆଟି ଏକା ସାହା
ସଭିଏ ଏକା ଗାଁ, ଭାଇତ
ସବୁ କଥାରେ ସାହା ।।
ସେହି ମୋ ଗାଁ, ସେହି ମୋ ମା
ମନ ମୋ ନିଏ ଟାଣି
ହୀନ ପଣରେ ବିହ୍ୱଳ ପ୍ରାଣେ
ହୁଏ ମୁଁ ମନେ ଗୁଣି ।।

ଗୀତ—୩୪

କିଏ ଅଛ ହେ ମନ୍ଦିରେ
କିଏ ଅଛ ଗୁରୁଦ୍ୱାରେ
ଚର୍ଚ୍ଚ ଆଉ ମସ୍‌ଜିଦ୍ ଶୂନ୍ୟ ସେହି ଘରେ ॥୧॥
ମଠ ବାଡ଼ି ସିନା ବୃଥା ଏ ଭାବନା
ପ୍ରତୀକର ପୂଜା ପାଇଁ ମାଟିର ଖେଲଣା
ଏ ମାଟି ଖେଲନା ନୁହଁଇ ଈଶ୍ୱର
ଦେଖ ପ୍ରତି ହୃଦେ ବସିଛନ୍ତି ସେ ଶ୍ରୀଧର ॥
ଜୀବେ ଦୟାକର
ହୃଦେ ନାମ ଧର
ସେହି ସିନା ନାରାୟଣ ଅଂଶ ଅବତାର ॥
ସବୁ ଘଟେ ଦେଖ ଏ ନାରାୟଣ
ବେଳ କାଳ ଦେଖି ସାହା ଅଟଇ ଭିଆଣ
ଏ ଦେବତା ଚିହ୍ନି ଏବେ ପୂଜାକର
ଠକ ଚତା ମନ୍ଦିରରେ ନାହାନ୍ତି ଈଶ୍ୱର
ଛାଡ଼ି ଭେଦ ଭ୍ରାନ୍ତ
ପୂଜ ଜୀବ ସର୍ବ
ଦୟା କ୍ଷମା ଅହିଂସାରେ ମିଳିବେ ଈଶ୍ୱର ॥
ସିଏ ଯୀଶୁ ସିଏ ଆଲ୍ଲା ଓ ଶଙ୍କର
ସବୁପଥେ ସବୁ ମତେ ସେ ଏକା ଈଶ୍ୱର
ଅନେକ ପଥରେ ଏକରେ ବସିଛି
ମନ ଭିଡ଼ି ମାୟା ପଥେ ଠକି ଦେଉଅଛି
ସର୍ବ ଜନ ପ୍ରାଣ
ଚିହ୍ନ ନାରାୟଣ
ପ୍ରାଣୁ ପ୍ରାଣ ନେଇ ଦେଖ ବିଶ୍ୱ ରୂପ ତା'ର ॥

⊡

ଗୀତ—୪୦

ଜୀବରେ ତ ଦୟା ନାମରେ ବିଶ୍ୱାସ
ସବୁ ଧରମର ସାର
ଈଶ୍ୱର ପାଇବା ଯେବେ କର ଆଶା
ସେବାକର ମଣିଷର ॥
ତା'ର ଉପକାର ପବିତ୍ର ଧାର
ମନକୁ ପବିତ୍ର କରେ
ସକଳ ପଥରେ ପୁଣ୍ୟ ଭାବ ଦେଇ
ଜୀବନକୁ ଶାନ୍ତ କରେ ॥
ସେ ପଥରୁ ଧର୍ମ ସେ ପଥରୁ କର୍ମ
ଜଗତ ମଙ୍ଗଳ ମୟ
ମିଳିବ ଈଶ୍ୱର ସୁଖ ଶାଶ୍ୱତର
ଜନମ ହେବ ବିଜୟ ॥
ଆମର ଭାବନା ସବୁ ଭାବନାରେ
ମନେ ଥରେ ବସି ଭାବ
ଦେଖିବ ସଭିଏଁ ଏକା ଏ ଧରାରେ
ଜୀବନର ସବୁ ଭାବ ॥
ସଭିଙ୍କ ମଧ୍ୟରେ ନିଜକୁ ମିଶାଇ
ଖୋଜି ଚାଲ ନାରାୟଣ
ଦୁଃଖ ସୁଖ ସବୁ ଯିବ ତ ଉଭେଇ
ସଫଳ ହେବ ଜୀବନ ॥
ଅନ୍ତରୁ ଅନ୍ତରୁ ବାଣୀ ଝରଝର
ବହିଯିବ ଗଙ୍ଗା ଧାର
ସେ ଧାରାରୁ ନୀର ସଦା ପାନ କର
ଲଭିବ ସେ ସ୍ୱର୍ଗପୁର ॥



ଗୀତ — ୪୧

ମୂର୍ତ୍ତି ମୁଁ ନାଃସ୍ଵଛାର
ମାଟି ସରଗ ମୋର
ଏ ମାଟି ପରେ ଢ଼ାଳ ମୋ ଲହୁ
ଦେଖ ଫସଲ ମୋର
ଖରା ବରଷାକୁ ନାହିଁ ମୋ ଡ଼ର
କାମ କରେ ସହ୍ଵ ଶୀତ କାକର
ହସ ଫୁଟାଣେ ଦୁନିଆର ..
ସବୁ ଖାଲି ମୋର ମୋର
ଦେଖ କି ଅଛି ମୋର
ସୁନା ଫସଲେ ହସେ ମୁଁ ଦିନା
ଦେଖ ମୋ ସୁଖ ଘର
ନିଜର ଦୁଃଖକୁ ନିଏ ହକାଇ
ଜଗତରେ ସୁଖ ଦିଏ ବଢ଼ାଇ
କର୍ମ ଅଟେ ସୁଖ ମୋର
ଆଶା ନିରାଶ ପଥେ
ଚାଲିଥାଏ କର୍ମ ପଥେ
ସମୟ ସାଥେ ବଢ଼ି ଯିବାରେ
କ୍ଷେତ ଦିଏ ଭୁଲାଇ
ସୁଜଳା ସୁଫଳା ମାତାର ହାର
ଝୁଲସାଇ ଦିଏ ଋବର କର
ସେବକ ମୁଁ ମାତାର ॥



ଗୀତ—୪୨

ବିଶ୍ୱେ ଯହିଁ ଦେବ ନିବାସ
ବେଦର ବାଣୀ ଯା ମୁଖ ଭାଷ
ଗୀତା ବାଣୀ ଯା ଦିବ୍ୟ ସନ୍ଦେଶ
ସେହି ତ ଆମ ଦେଶ ।।

ଯା ଦେଶ ଶିଶୁ ତା'ର ସେବକ
ବୀର ପଣେ ସଦା ତା'ର ରକ୍ଷକ
ମାତୃଭୂମି ପାଇଁ ଦିଆଇ ଶ୍ୱାସ
ସେହି ତ ଆମ ଦେଶ ।।

ଯେ ଦେଶେ ନାରୀ ମାତା ସମାନ
କୋଟି ତୀର୍ଥ ଯାହାର ହୃଦ ଆସନ
ସ୍ନେହ ମମତା ଯା ଓଠ ହସ
ସେହି ତ ଆମ ଦେଶ

ସତ୍ୟ ଯାହାର ପରମ ବାଣୀ
ଶାନ୍ତି, ମୈତ୍ରୀ, ଅହିଂସା ବାଣୀ
ଦେଇଛି ଯିଏ ଦେଶକୁ ଦେଶ
ସେହି ତ ଆମ ଦେଶ ।

ରାମାୟଣ ପରିବାର ପାଇଁ
ମହାଭାରତେ ଜ୍ଞାନକୁ କହି
ସୁଖେ ଯେ ପାଳେ ରାଜ୍ୟ ଓ ଦେଶ
ସେଇ ତ ଅମ ଦେଶ ।।

ଶିବାଜୀ ଗୁରୁ ରଣା ପ୍ରତାପ
ଗାନ୍ଧୀ ଗୋପବନ୍ଧୁ ଲଭି ସନ୍ତାପ
ପାତିଲେ ଶିର ରଖିଲେ ଯଶ
ସେହି ତ ଅମ ଦେଶ

ନାରୀ ପ୍ରାଣେ ଯିଏ ଆଣି ଦେଇଛି
ଲକ୍ଷ୍ମୀବାଈ, ଦୁର୍ଗା ନାମ ଟେକିଛି
ଯା ଆସନ ସଦା ଲକ୍ଷ୍ମୀ ନିବାସ
ସେଇ ତ ଆମ ଦେଶ...
ଦେବ ଭୂମି ତପ ଭୂମି ଏ ଦେଶ
ଭାଗ୍ୟ ଫଳେ ମିଳେ ଏଇ ନିବାସ
ବିଶ୍ୱ ଗଉରବ ସେ ଯେଉଁ ଦେଶ
ଆମ ଭାରତ ବର୍ଷ ।।



ଗୀତ—୪୩

ବିଦେଶୀ ଜାତି
ସେ ତ ଚତୁର ଅତି
ବେପାରୁ ବେପାର କରି ଉଠିଲେ ମାତି
ଟକୋଠି କୋଠି ଗଢ଼ିଲେ
ଧନ ରତ୍ନ ବୋହିଲେ
ଶେଷରେ ଆମକୁ କଲେ ଗୋଲାମ ।।
ବନ୍ଧୁକ ମୁନେ ଶାସନ କଲେ ମାଡ଼କୁ ଦେଇ
ଭେଦ ବିଭେଦ ଛନ୍ଦ କପଟ ଦେଲେ ଶିଖାଇ
ସ୍ୱାର୍ଥ ମଞ୍ଜି ବୁଣିଲେ
ବିଷ ଉପାଧି ଦେଲେ
ଶେଷରେ ଗଢ଼ିଲେ କିରାଣି ଜାତି
ରକ୍ତ, ରକ୍ତରେ ଆମ ସ୍ୱାର୍ଥ ବଢ଼ିଲା
ଭାଇର ଛାତିରେ ଭାଇ ଛୁରି ମାରିଲା
ଛାଡ଼ି ନିଜ ଗରବ
ଦେଖ ଦେଖ ସରବ

ଆଜି ଏ ଧରାରେ ହୀନ ସନ୍ତତ
ଛାଡ଼ିଲୁ ଦେଶ ସୁଖର କଥା ସ୍ୱାର୍ଥରେ ମାତ
ଆପଣେ ବଞ୍ଚିଲେ ବାପର ନାମେ ହୋଇଲେବଡ଼
ଅନୁକରଣ ଭାବ
ମନେ କି ସୁଖ ଦେବ
ସ୍ୱଦେଶ, ସ୍ୱଧର୍ମେ ଆସ ଝଟତ ।।
କ୍ଷମତାର ଏ ପଣା କାଠି ଦିନେ ଗଢ଼ିବ
ପରକଥାର ଗର୍ବ ଦିନେ ଉଜୁଡ଼ିଯିବ
ପ୍ରାଣେ ଦୁଃଖ ବଢ଼ିବ
ମନେ ସନ୍ତାପ ହେବ
ଶେଷରେ ଭାବିଲେ କି ହେବ ଭ୍ରାନ୍ତି...



ଗୀତ—୪୪
ଶୁଣ ହେ ଦେଶ ଶିଶୁ ସକଳ
ଦେଶର ଦୁଃଖ କାହାଣୀ କଥା
ଛାଡ଼ି ମହତ ତା'ର ଅତୀତ
ହୀନମାନ ଆଜି ଭାରତ ମାତା...(୨)
ବୁଡ଼ିଗଲା ଦେଶ ସମ୍ପଦ ଶିରୀ
ବିଦେଶୀ ଆସିଲେ ବେପାର କରି
ସ୍ୱାର୍ଥର ବୀଜ, ବୁଣି ପ୍ରତି ହୃଦେ
ଟେକିଲେ ତାଙ୍କର ଶାସନ ଛତା
ଶୁଣ ହେ .................. ..
ବନ୍ଧୁକ ମୁନରେ ଶାସନ ଚାଲିଲେ
ଅବିଶ୍ୱାସୀ ହାତରେ ଛୁରି ଧରାଇଲେ

ଗଢ଼ିଲେ କାହାଣୀ ନେଲେ ସବୁଟାଣି
ପରକୀୟ ହେଲା ଆମର ମଥା...
ଛାଡ଼ି ଦେଶ ନୀତି ସମ୍ପଦ ଶିକ୍ଷ
ବିଦେଶୀ ସୁଖକୁ ନେଲେ ଆଦୋର
ଦେବ ପୂଜା ଗଲା ବ୍ୟକ୍ତି ପୂଜା ହେଲା
ଦେଖ ହେ ଆଜି ଦେଶର କଥା...
ସ୍ୱାର୍ଥ ପଥେ ମାତି ସବୁ ଜାଣିଦେଲେ
ଦେଶ, ଜାତି କଥା ସବୁ ଭୁଲିଗଲେ
ଏ ଅନୁକରଣ ବଢ଼ାଏ କ'ଣ
ମିଛ, ସତ ଆଜି ଭାଳେ ଏ କଥା ।।

ଦେଶ ପ୍ରାଣ ଆଜି ଅସାର ହେଲା
ଜାତୀୟ ମହତ ସବୁ ବୁଡ଼ିଗଲା
ଘରେ ଘରେ ଦୁଃଖ ଖୋଜି ବୁଲେ ସୁଖ
ଲଜ୍ଜା ଘେନ ଦାଣ୍ଡେ ନୁଆଁଏ ମଥା
ପର ରାଷ୍ଟ୍ର ନୀତି କି ସୁଖ ଦେବ
ନିଜ କଥା ସିନା ସୁଖ ବାଢ଼ିବ
ଏଣୁ ଯାଏ କହି ଶୁଣ ଦେଶ ଭାଇ
ଜାଗ ଆଜି ନେଇ ଜାତୀୟତା
ଜାତୀୟତା ଘେନ ଗର୍ବରେ କି ବଢିବା
ବିଶ୍ୱ କକ୍ଷେ ପୁଣି ମହତ ରଖିବା
ହସିବ ଜନନୀ, ଜ୍ଞାନୀ ଗୁଣ ଘେନ
ଖୋଜିବ ସେ ପୁଣି ଜଗତ ଜିତା ।।

# ସୂକ୍ତି ସ୍ତୋତ୍ରମ୍

ଗୁରୁପିତା ଗୁରୁର୍ମାତା ଗୁରୁର୍ଦ୍ଦେବୋ ନ ସଂଶୟଃ
କର୍ମଣା ମନସାବାଚା ତସ୍ମାତ୍ ସର୍ବୈ ପ୍ରସେବ୍ୟତେ ୧

ସତ୍ୟଂ ଶୌଚ ଦୟା ମୌନଂ ବୁଦ୍ଧି ଶ୍ରୀ ହ୍ରୀ ର୍ଯଶଃ କ୍ଷମା
ଶମୋଦମୋ ଭଗଶ୍ଚେତି ଏତେ ସର୍ବମ୍ ସୁଲକ୍ଷଣମ୍ ୨

ଦେବ ଦ୍ୱିଜଗୁରୁ ପ୍ରାଜ୍ଞ ପୂଜନଂ ଶୌଚ ମାର୍ଜ୍ଜନମ୍
ବ୍ରହ୍ମଚର୍ଯ୍ୟ ମହିଂସା ଚ ଶରୀରଂ ତପଉଚ୍ୟତେ ୩

ଅହିଂସା ସତ୍ୟମ୍ ଅକ୍ରୋଧଃ ତ୍ୟାଗଃ ଶାନ୍ତିଃ ଅପୈଶୁନମ
ଦୟା ଭୂତେଷ ଅଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଲମ୍ ୪

ବିଦ୍ୟା ବିନୟ ସମ୍ପନ୍ନେ ବ୍ରାହ୍ମଣେ ଗବିହସ୍ତିନି
ଶୁନିଚୈବ ସ୍ୱପାକେଚ ପଣ୍ଡିତା ସମଦର୍ଶିନଃ ୫

ଅଷ୍ଟାଦଶ ପୁରାଣେଷୁ ବ୍ୟାସସ୍ୟ ବଚନ ଦ୍ୱୟମ୍
ପରୋପକାରାୟ ପୁଣ୍ୟାୟ ପାପାୟ ପରପୀଡ଼ନମ୍ ୬

ଶମୋଦମ ସ୍ତପଃ ଶୌଚ କ୍ଷାନ୍ତି ରାର୍ଜବ ମେବଚ
ଜ୍ଞାନଂ ବିଜ୍ଞାନ ମାସ୍ତିକ୍ୟଂ ବ୍ରହ୍ମ କର୍ମ ସ୍ୱଭାବଜମ୍ ୭

ସତ୍ୟଂ ମାତା ପିତା ଜ୍ଞାନଂ ଧର୍ମ ଭ୍ରାତା ଦୟା ସଖା
ଶାନ୍ତି ପତ୍ନୀ କ୍ଷମା ପୁତ୍ରଷ ଡ୍ରୈତେ ମମବାନ୍ଧବାଃ ୮

ସ୍ନାନଂ ସନ୍ଧ୍ୟା ଜପହୋମ ସ୍ୱାଧ୍ୟାୟ ଦେବପୂଜନଂ
ଅତିଥୌ ବୈଶ୍ୱଦେବଂ ଚ ସତ କର୍ମାଣି ଦିନେ ଦିନେ ୯

ଶ୍ରେୟାନ୍ ସ୍ୱଧର୍ମେ ବିଗୁଣାଃ ପରୋଧର୍ମୋ ସ୍ୱନୁଷ୍ଠିତାତ୍
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରାଧର୍ମୋ ଭୟାବହ ୧୦

କର୍ମଣ୍ୟେ ବାଧିକା ରସ୍ତେ ମା ଫଳେଷୁ କଦାଚନ
ମା କର୍ମଫଳ ହେତୁର୍ଭୁର୍ମାତେ ସଙ୍ଗୋଽସ୍ତ୍ୱ କର୍ମଣି ୧୧

ଶୁଭେନ କର୍ମଣା ସୌଖ୍ୟଂ ଦୁଃଖଂ ପାପେନ କର୍ମଣା
କୃତ ଫଳତ ସର୍ବତ୍ ନାକୃତଂ ଭୁଦୀତ କଚତ ୧୨

ପୁଣ୍ୟବାନ୍ ଧାର୍ମିକଃ ଶୁଦ୍ଧୋଗୁରୁ ଭକ୍ତୋ ଜିତେନ୍ଦ୍ରିୟଃ
ଶିଷ୍ୟ ଯୋଗ୍ୟ ଭବେତ୍ ସୋ ହି ଦାନଧ୍ୟାନ ପରାୟଣଃ ୧୩

ଜନ୍ମନା ଜାୟତେ ଶୂଦ୍ରଃ କର୍ମଣା ଦ୍ୱିଜ ଉଚ୍ୟତେ
ବେଦ ପାଠୀ ଭବେଦ୍ ବିପ୍ରଃ ବ୍ରହ୍ମ ଜାନାତି ବ୍ରାହ୍ମଣ ୧୪

ସୁଖ ଦୁଃଖ ସମେକୃତ୍ୱା ଲାଭା ଲାଭୌ ଜୟାଜୟୌ
ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ ନୈବଂ ପାପଂ ମବାପ୍ୟସି ୧୫

ନାସ୍ତି ମାତ୍ରା ସମଂ ପାଶଂ ନାସ୍ତି ଯୋଗାତ ପରଂ ବଲମ
ନାସ୍ତି ଜ୍ଞାନାତ୍ ପରୋବନ୍ଧୁ ନାହଂକାରାତ୍ ପରୋରିପୁଃ ୧୬

ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍‌ଥାନ ଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ୧୭

ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମୀ ଯୁଗେ ଯୁଗେ ॥ ୧୮

ଅନ୍ନାଦ ଭବନ୍ତି ଭୂତାନି ପର୍ଜ୍ଜନ୍ୟାନ୍ ଅନ୍ନ ସଂଭବଃ
ଯଜ୍ଞାଦ୍ ଭବନ୍ତି ପର୍ଜ୍ଜନ୍ୟୋଃ ଯଜ୍ଞଃ କର୍ମ ସମୁଦ୍ଭବ ୧୯

ହନ୍ତେଷି ପ୍ରାଣିନ୍ ନିତ୍ୟମାସ୍ତି କସ୍ତ୍ୟକ୍ତ ନାସ୍ତିକଃ
ସ୍ୱଧର୍ମ ନିରତୋ ଭକ୍ତ୍ୟା ପିତୃ ମାତୃ ହିତୋଦତଃ ୨୦

ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱା ସର୍ବ ପାପେ ଭ୍ୟୋମୋକ୍ଷୟିଷ୍ୟାମି ମାଶୁଚ ୨୧

ଯଦ୍ ଯଦ୍ ବିଭୂତିମତ୍ ସତ୍ତ୍ୱଂ ଶ୍ରୀ ଦଦୁର୍ଜିତ ମେବଚା
ତତ୍ତ ଦେବାବ ଗଚ୍ଛତ୍ୱଂ ମମ ତେଜୋଂଽଶ ସମ୍ଭବମ୍ ୨୨

ଋଗ୍ ଯଜୁଃ ସମାଥର୍ବାଶ୍ୟା ବେଦାଶ୍ଚତ୍ୱାର ଉଦ୍ଧୃତାଃ
ଇତିହାସ ପୁରାଣଂଚ ପଞ୍ଚମୋବେଦ ଉଚ୍ୟତେ ॥ ୨୩

ତ୍ୱମେବ ଶରଣଂ ଗଚ୍ଛ ସର୍ବ ଭାବେନ ଭାରତ
ତତ୍ ପ୍ରସାଦାତ୍ ପରାଂ ଶାନ୍ତି ସ୍ଥାନଂ ପ୍ରାପସ୍ୟସି ଶାଶ୍ୱତଂ ୨୪

ସର୍ବସ୍ୱ ତ୍ୱୟା କେଶବ ଭକ୍ଷ୍ୟମେବ ପ୍ରଦଚ୍ଛତେ
ଭୁକ୍ତ୍ୱା ସୁମୁଖେ କେଶବ ମମଦୋଷ ହରେହର ୨୫

ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ଜନାର୍ଦ୍ଦନ
ଯତ୍ ସ୍ମରମାମ ମୟାଦେବ ପରିପୂର୍ଣ୍ଣମ୍ ତମସ୍ତୁମେ ୨୬

ସୂକ୍ତି ସ୍ତୋତ୍ରମିଦଂ ପୁଣ୍ୟ
ଶ୍ରଦ୍ଧୟା ଯଃ ପଠେ ସଦା
ଦେବ ଭକ୍ତ୍ୟା ଭବେତ୍ତସ୍ୟ ନାସ୍ତିଽଏ ସଂଶୟଃ ॥

—o—